ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଅରକ୍ଷଣୀୟା

ଲେଖକ :
ଶ୍ରୀ ଶରତ୍‌ଚନ୍ଦ୍ର ଚଟ୍ଟୋପାଧ୍ୟାୟ

ଅନୁବାଦକ :
ଶ୍ରୀ ନଟବର ସାହୁ, ବି.ଏସ୍‌ସି., ବି.ଏଡ୍.
କୋବିଦ, ଡିପ୍-ଇନ୍-ବେଙ୍ଗଲି

ଗ୍ରନ୍ଥମନ୍ଦିର

Digitized by srujanika@gmail.com

—''ମଝିଆଁ ମାଉସି ! ମା' ମହାପ୍ରସାଦ ପଠାଇଚ୍ନ୍ତି— ଏଇ ରଖ।''

—''କିଏ... ଅତୁଳ କି ରେ ? ଆ ବାପା, ଘର ଭିତରକୁ ଆ''— କହି କହି ଦୁର୍ଗାମଣି ରୋଷେଇଘରୁ ବାହାରି ଚାଲିଆସିଲେ। ଅତୁଳ ପ୍ରଣାମ କରି ତାଙ୍କର ପାଦଧୂଳି ମୁଣ୍ଡରେ ମାରିଲା।

ମାଉସି ଅତୁଳକୁ ଆର୍ଶୀବାଦ ଦେଇ କହିଲେ, ''ଦୀର୍ଘଜୀବୀ ହୁଅ ବାବୁ ! ଆରେ ମା' ଜ୍ଞାନଦା, ତୋର ଅତୁଳ ଭାଇ ଆସିଲାଣି। ଗୋଟିଏ ଆସନ ଆଣି ପକାଇଦେଲୁ ମା'— ଭାଇ ତୋର ବସୁ। କାଲି ରାତିରେ ଘୋଡ଼ାଗାଡ଼ି ଶବ୍ଦ ଶୁଣି ଭାବିଲି, କିଏ ଆସିଲା। ଯଦି ଜାଣିଥାନ୍ତି ଅପା ତୁମ୍ଭର ଆସିଲେ, ତେବେ ଯାଇ ତାଙ୍କ ପାଦଧୂଳି ନେଇଥାନ୍ତି। ତେବେ ପୁରୀରୁ ଏବେ ଫେରିଲ ବୋଧହୁଏ ? ଆଲୋ ମା', ଭିତରେ କ'ଣ କରୁଚୁ ?''

ଘର ଭିତରୁ ବାହାରି ବାର-ତେର ବର୍ଷର ଶ୍ୟାମଳ ବର୍ଣ୍ଣର ଝିଅଟିଏ ଆସନ ଆଣି ପିଣ୍ଡାରେ ପକାଇଦେଲା, ଅତୁଳ ପାଖକୁ ଆସି ମୁହଁ ତଳକୁ କରି ପ୍ରଣାମ କଲା, ତା' ହାତରୁ ମହାପ୍ରସାଦ ପାତ୍ରଟି ମଧ୍ୟ ନେଲା— ମାତ୍ର ପଦେ କଥା କହିଲା ନାହିଁ କି ଅତୁଳକୁ ଚାହିଁଲା ନାହିଁ। ଘର ଭିତରକୁ ଫେରିଯିବା ସମୟରେ ଝିଅଟିର ଅଧରରେ ଚାପା ହସ ଫୁଟିଉଠିଲା। ଖାଲି କ'ଣ ସେତିକି— ଲକ୍ଷ୍ୟ କଲେ ଦେଖାଯିବ, ଏଇ ସୁଶ୍ରୀ ଝିଅଟିର ମୁଖମଣ୍ଡଳରେ ସତେ ଯେପରି ବିଦ୍ୟୁତ୍‌ର ଆଭା ଖେଳିଯାଉଥିଲା।

ଅତୁଳର ବାପା ସେତେବେଳେ ସହରରେ ଚାକିରି କରିଥିଲେ। ଅନେକ ଧନ-ସମ୍ପତ୍ତି ଅର୍ଜନ କରି ଅବସର ଗ୍ରହଣ ପରେ ପେନ୍‌ସନ୍ ପାଇ ଘରେ ଥିଲେ। ଚାରିବର୍ଷ ତଳେ ସେ ମରିଗଲେ। ବି.ଏ.ପରୀକ୍ଷା

Digitized by srujanika@gmail.com

ଦେଇସାରି ପ୍ରାୟ ଦୁଇମାସ ହେଲା ମା'ଙ୍କୁ ଧରି ଅତୁଳ ତୀର୍ଥଯାତ୍ରାରେ ବାହାରିଯାଇଥିଲା । ଏବେ ସେ ରାମେଶ୍ୱର ଓ ପୁରୀ ଦେଇ ଘରକୁ ଫେରିଛି ।

ଦୁର୍ଗାମଣି କହିଲେ, ''ମୁଁ ଏପରି ମହାପାତକୀ ଯେ ଥରେ ହେଲେ କାଶୀ ଯାଇ ବାବା ବିଶ୍ୱନାଥଙ୍କୁ ଦର୍ଶନ କରିବା ମୋ' ଭାଗ୍ୟରେ ଘଟିଲା ନାହିଁ । ଏ ଜନ୍ମରେ ବୋଧହୁଏ ସମ୍ଭବ ନୁହେଁ ।''

ଅତୁଳ କହିଲା, ''ବୁଝିଲ ମଝିଆଁ ମାଉସି ! ମନ ଦୃଢ଼ କରି ଜବରଦସ୍ତି ନ ବାହାରିଲେ କୌଣସି ତୀର୍ଥସ୍ଥାନ ଦେଖିହେବନି । ମୁଁ ସେମିତି ଜୋର୍ କଲି ବୋଲି ବୋଉ ମୋର ତୀର୍ଥସ୍ଥାନ ସବୁ ବୁଲିଆସିଲା— ନହେଲେ ସେ କ'ଣ ମନକୁ ବାହାରୁଥିଲା ?''

ଦୁର୍ଗାମଣି ଦୀର୍ଘନିଃଶ୍ୱାସ ପକାଇ କହିଲେ, ''ସତ କଥା କହିଲୁ ବାପ ! ହେଲେ କ'ଣ ଦେଖି ଏଥିପାଇଁ ଜୋର୍ କରିବି ? ମାସକୁ ତ ମୋଟେ ତିରିଶ ଟଙ୍କା ଦରମା । ସେଥିରେ ଖିଆପିଆ, ଘରଖର୍ଚ୍ଚ ବନ୍ଧୁବାନ୍ଧବ, ରୋଗ-ବୈରାଗ ପାଇଁ ଔଷଧ ଇତ୍ୟାଦି ଯାଇ ଆଉ ଅବା କେତେ ଟଙ୍କା ବଳିବ ? ଦେଖୁ ଦେଖୁ ଝିଅଟାକୁ ଆସି ତେର ବର୍ଷ ହେଲା । ତା'କଥା ଚିନ୍ତାକରି ମୋ' ଆଖିକୁ ନିଦ ନାହିଁ— ଆଉ ଦେହର ରକ୍ତ ବି ଶୁଖିଯାଉଛି ।'' —କହୁ କହୁ ତାଙ୍କ ଆଖିରେ ଲୁହ ଜମିଗଲା ଓ ଅଶ୍ରୁବିନ୍ଦୁ ଝରିପଡ଼ିଲା ତାଙ୍କ ଗଣ୍ଡଦେଶରେ ।

ବଡ଼ ଆଶ୍ଚର୍ଯ୍ୟର କଥା ଯେ, ଦୁର୍ଗାମଣି ନିଜର ଦୁଃଖ କହି ଲୁହ ଝରାଉଥିଲେ ବି ଅତୁଳ ଫେଁ ଫେଁ ହସିଦେଲା । ସେ କହିଲା, ''ମାଉସୀଙ୍କର ଏ ଯେଉଁ କଥା ନା... ଦୁନିଆରେ କ'ଣ ଆଉ କାହାରି ଝିଅ ନାହିଁ ନା କ'ଣ ? ସତେ ଯେପରି ତୁମରି ଏକୁଟିଆ ଝିଅଟିଏ ହେଇଚି— ତା' ନେଇ ତୁମର ରାଇଜଯାକର ଭାବନା ।''

—''ଭାବନା ନୁହେଁ ରେ ବାପ... ମୃତ୍ୟୁ-ଯନ୍ତ୍ରଣା । ଆମ ସମାଜର କଠୋର ନିୟମ ତ ଜାଣିଥିବୁ— ଝିଅ ବିଭା କରି ନପାରିଲେ ମୋର ଜାତି ଯିବ । କିନ୍ତୁ କେମିତି ଝିଅ ବିଭାଘର କରିବି ? ଧନ ପାଇବି କେଉଁଠୁ ? ଏଇ ଘରଖଣ୍ଡିକ ବିନା ମୋର ତ ନିଜର ବୋଲି

Digitized by srujanika@gmail.com

ଆଉ କିଛି ନାହିଁ।''

ଅତୁଳ ଆସିବାର ଅଧଘଣ୍ଟା ପୂର୍ବରୁ ସ୍ୱାମୀ-ସ୍ତ୍ରୀ ମଧ୍ୟରେ ଏହି ଝିଅକଥା ନେଇ ଉଚ୍ଚବାଚ୍ୟ ହୋଇଥିଲା। ଦୁର୍ଗାମଣିଙ୍କ ସ୍ୱାମୀ ନଖାଇ ଅଫିସ୍ ଚାଲିଯାଇଥିଲେ– ରାଗରେ ଭାତଥାଳି ଫିଙ୍ଗି ଦେଇଥିଲେ। ସେଇ କଥା ଚିନ୍ତାକରି ଦୁର୍ଗାମଣିଙ୍କ ଆଖିରୁ ଲୁହ ଟପ୍‌ଟପ୍ ବୋହିପଡ଼ିଲା। ଆଖିରୁ ଲୁହ ପୋଛୁ ପୋଛୁ ଦୁର୍ଗାମଣି କହିଲେ, ''ଆରଜନ୍ମରେ ମୁଁ କି ପାପ କରିଥିଲି ଯେ, ଏ ଜନ୍ମରେ ଝିଅଟିଏ ଜନ୍ମ କରିଛି।''

ଅତୁଳ ଉଠିପଡ଼ି କହିଲା, ''ମୁଁ ଯାଉଛି ମାଉସି! ନହେଲେ ତୁମ ଦୁଃଖକଥା ସରିବ ନାହିଁ କି କାନ୍ଦ ବନ୍ଦ ହେବନାହିଁ।''

ଦୁର୍ଗାମଣି ଲୁହ ପୋଛୁ ପୋଛୁ କହିଲେ, ''ଆଉ ଟିକିଏ ବସ ବାପା! ତୋ' ପାଖରେ କିଛି ସମୟ କାନ୍ଦି ମୋର ଦୁଃଖ ଜଣାଇଲେ କଷ୍ଟ କିଛିଟା ଲାଘବ ହେଇଯିବ। ବୁଝିଲୁ ବାପ, ମୁଁ ଭଗବାନ୍‌ଙ୍କୁ ଦୋଷ ଦେଉଛି। ଝିଅଟାକୁ ଯଦି ମୋ' କୋଳକୁ ପଠାଇଲେ ତେବେ ତାର ବର୍ଣ୍ଣ ତୋଫା ନକରି ପଠାଇଲେ କାହିଁକି? ଏ କାଳୀ ଝିଅଟାକୁ କିଏ ଅବା ବିଭା ହେବ? ସମସ୍ତେ ଗୋରୀ ସୁନ୍ଦରୀ କନ୍ୟା ଚାହାନ୍ତି। ଏ ପୋଡ଼ା ସମାଜ ଯଦି କୁଳଶୀଳ, ସ୍ୱଭାବ ଚରିତ୍ର କିଛି ଦେଖିଲାନାହିଁ; ଝିଅ ମୋର କଳା ବୋଲି ତାକୁ ଯଦି କେଉଁଠି ବରପାତ୍ର ନ ଯୁଟେ, ତେବେ ବାପ-ମା'ଙ୍କର ଦୋଷ ରହିଲା କେଉଁଠି? ସେମାନଙ୍କୁ ସାମାଜିକ ଦଣ୍ଡ ଦେବା ଦରକାର କ'ଣ?

ଅତୁଳ କହିଲା, ''କାଳୀ ଝିଅର କ'ଣ ବାହାଘର ହୁଏନା! ଭଅଁର ଓ କୋଇଲି ତ କଳା– ସେମାନଙ୍କୁ କ'ଣ ଆଦର କରାଯାଏ ନାହିଁ? ଏସବୁ ଚିରନ୍ତନ ଦୃଷ୍ଟାନ୍ତ।''

ଦୁର୍ଗାମଣି କହିଲେ, ''ସେ ସବୁ କଥାରେ ରହିଯାଇଛି– କାମରେ ନୁହେଁ। ତୋର କଥା ଶୁଣି ମୁଁ ସାନ୍ତ୍ୱନା ପାଉଛି ସତ; ହେଲେ ବଳ ପାଉନି। ଗିରୀଶ ଭଟ୍ଟାଚାର୍ଯ୍ୟ ଝିଅର ବିଭାଘର ମୁଁ ନିଜ ଆଖିରେ ଦେଖିଛି। ତାଙ୍କର ଆମପରି ଧନବଳ ନଥିଲା କି ଝିଅର ରୂପ ବି ନଥିଲା। ସେଥିପାଇଁ ବର ପାଇଲେ ପାଠିଏ ବର୍ଷର ବୁଢ଼ାଟିଏ।

Digitized by srujanika@gmail.com

ତା' ମାଆର ସେ ଛାତିଫଟା କାନ୍ଦଣା ଆଜି ପର୍ଯ୍ୟନ୍ତ ମଧ ମୋ' କାନରେ ଶୁଭିଯାଉଚି।''

—''କ'ଣ କହିଲ ମାଉସି ! ବରର ବୟସ ଷାଠିଏ ?''

—''ହଁ... ହେବ ପରା। ହରି ଚକ୍ରବର୍ତ୍ତୀଙ୍କ ନାତୁଣୀଙ୍କୁ ଆରପଡ଼ାର ନିତାଇ ଚାଟାର୍ଜୀ। ତା'ର ଆଠ-ଦଶବର୍ଷର ଗୋଟିଏ ଝିଅ ଅଛି। ହିସାବ କରି ଦେଖୁନାହୁଁ ।''

ବୟସ କଥା ଶୁଣି ଅତୁଳ ସ୍ତବ୍ଧ ହୋଇଗଲା।

ଦୁର୍ଗାମଣି ପୁଣି କହିଲେ, ''ସେ ଯଦି ବିଷ ଖାଇ ଆତ୍ମହତ୍ୟା କରେ ବା ଗଳାରେ ଦଉଡ଼ି ଦେଇ ମରେ ବା କୁଳରେ କଳଙ୍କ ଲଗାଇ କୁଆଡ଼େ ଚାଲିଯାଏ, ତେବେ ମାଆ ହୋଇ ତାକୁ କିପରି ଅଭିଶାପ ଦିଏ – କହିଲୁ ଦେଖି ?''

ଅତୁଳ ନୀରବରେ ବସିରହିଥିଲା। ଦୁର୍ଗାମଣି କହିଚାଲିଥାନ୍ତି, ''ବାପା ଅତୁଳ, ସମସ୍ତେ କହନ୍ତି ଛାତ୍ରମାନଙ୍କ ଭିତରେ ଦୟା-ଧର୍ମ ବିରାଜମାନ। କେହି ଶିକ୍ଷିତ ଯୁବକ ଯଦି ମୋ' ଝିଅକୁ ବିବାହ କରିବାକୁ ଇଚ୍ଛା କରନ୍ତି, ତେବେ ମୁଁ ମରିବା ପର୍ଯ୍ୟନ୍ତ ତୋ' ନିକଟରେ ଋଣୀ ହୋଇ ରହିବି ବାପ !''

ଅତୁଳ କହିଲା, ''ତୁମେ ଏତେ ବ୍ୟସ୍ତ କାହିଁକି ହେଉଛ ମାଉସି ! ମୁଁ କଥା ଦେଉଛି...'' କିନ୍ତୁ କଥାଟା ତା'ର ଶେଷ ହୋଇପାରିଲାନାହିଁ; ଅତୁଳର କଣ୍ଠ ରୋଧ ହୋଇଗଲା। ଅବଶ୍ୟ ଦୁର୍ଗାମଣି ଏହା ଲକ୍ଷ୍ୟ କରିପାରିଲେନାହିଁ– ଅନ୍ୟ କେହି ଉପସ୍ଥିତ ଥିଲେ ଏହା ଲକ୍ଷ୍ୟ କରି-ପାରିଥାନ୍ତେ।

ଅତୁଳ କହିଲା, ''ଦେଖିବି... ମୁଁ ଚେଷ୍ଟା କରିବି। ଆରେ ଜ୍ଞାନଦା, ପାନଖଣ୍ଡେ ଆଣିଲୁ– ମୁଁ ଘରକୁ ଯାଏ।''

ଦୁର୍ଗାମଣି ରାଗିଉଠି ବଡ଼ପାଟିରେ କହିଲେ, ''ଆଲୋ କୁଆଡ଼େ ଗଲୁ ? ପାନଖଣ୍ଡେ ଆଣି ଅତୁଳ ଭାଇକୁ ଦେ ପୋଡ଼ାମୁହିଁ ! ପୋଡ଼ାମୁହିଁର କେଉଁ ରୂପ ଅଛି ନା ଗୁଣ ଅଛି ? ଏ ସବୁ କଥା କ'ଣ ଶିଖାଇବାକୁ ହେବ ? ମହାପ୍ରସାଦ ନେଇ ଘର ଭିତରେ ପଶିଛି ଯେ, ଆଉ

Digitized by srujanika@gmail.com

ପଦାକୁ ବାହାରୁନାହିଁ।''

—''ଆଚ୍ଛା ମାଉସି, ମୁଁ ନିଜେ ପାନ ଆଣିବାକୁ ଯାଉଛି''—କହି ସେ ଶୋଇବାଘର ଭିତରକୁ ପଶିଗଲା।

ପାନଡାଲା ଧରି ଜ୍ଞାନଦା ପାନ ଭାଙ୍ଗୁଥିଲା। ଅତୁଳ ପହଞ୍ଚି କହିଲା, ''ମାଉସୀ କହିଲେ, ପୋଡ଼ାମୁହୀଁ ଜ୍ଞାନଦା ପାଇଁ ଷାଠିଏ ବର୍ଷର ବୁଢ଼ା ବରଟିଏ ଦରକାର। ତା'ର କେଉଁ ରୂପ ନା ଗୁଣ ଅଛି ?''

ଜ୍ଞାନଦା କିଛି ଉତ୍ତର ନ ଦେଇ ପାନ ଦି'ଖଣ୍ଡ ଅତୁଳ ହାତକୁ ବଢ଼ାଇଦେଲା।

ଅତୁଳ ପାନ ନେଉ ନେଉ କହିଲା, ''ପାନ ଯଦି ଭଲଭାବରେ ଭଙ୍ଗାହୋଇଥିବ ଓ ଭଲ ଲାଗିବ, ତେବେ ବରର ବୟସ ଷାଠିଏରୁ କମାଇ କୋଡ଼ିଏ କି ବାଇଶି ବର୍ଷ ଭିତରେ ରଖାଯିବ।''

ଜ୍ଞାନଦା ଲଜ୍ଜାରେ ମୁହଁ ତଳକୁ କରି ପାନଡାଲାଟା ଗୋଟିଏ କଣକୁ ଠେଲିଦେଇ ଠିଆହେଲା। ଅତୁଳ ଗଳା ଖଙ୍କାରି କହିଲା, ''ମାଉସୀଙ୍କ ପାଖରେ ଆଉ କ'ଣ ହେଲେ କହିଥାନ୍ତି! ଆଚ୍ଛା, ସମୟ ହୋଇଗଲାଣି, ମୁଁ ଯାଏ।''

ଜ୍ଞାନଦା କିଛି ନକହି ସେମିତି ଚୁପ୍ ହୋଇ ବସିପଡ଼ିଲା।

—''ହଉ, କଥା କହିଲୁ ନାହିଁ ତ— ମୁଁ ଯାଉଛି।'' —କହି ଜ୍ଞାନଦାର ଓଦା କେଶ ଗୁଚ୍ଛକୁ ଟାଣିଦେଇ ଅତୁଳ ଘରୁ ବାହାରକୁ ଚାଲିଗଲା। ଅଗଣାରେ ପହଞ୍ଚି କହିଲା, ''ମାଉସି, ବୋଉ ଜ୍ଞାନଦା ପାଇଁ ବମ୍ବେରୁ ଦି'ପଟ କାଚ୍ କିଣିଥିଲେ— ବାହାରକୁ ଆସି ଦେଖ।''

କାଚ୍‌ର ରୂପ ଓ କାରୁକାର୍ଯ୍ୟ ଦେଖି ଦୁର୍ଗାମଣି ତା' ମାଆର ଭୂରି ଭୂରି ପ୍ରଶଂସା କଲେ। ସେପରି କାଚ୍ ଏ ନିପଟ ମଫସଲରେ କ'ଣ, କଲିକତାରେ ବି ସେ ସମୟରେ ମିଳିବନାହିଁ। ଅତୁଳ ନିଜେ ଜ୍ଞାନଦା ପାଇଁ ଏ କାଚ ବମ୍ବେରୁ କିଣିଥିଲା— କିନ୍ତୁ ମାଆଙ୍କ ନାମ କହି କାଚ୍ ଦି'ପଟ ବଢ଼ାଇଦେଲା।

ମାଆ ଡାକିବାରୁ ଜ୍ଞାନଦା ଆସି ଉପହାର କାଚ୍ ଦି'ପଟ ନତମୁଖରେ ଗ୍ରହଣ କଲାବେଳେ ତାର ହାତ ଦୁଇଟି ଥରିଉଠିଥିଲା। କାଚ୍ ଦି'ପଟ

Digitized by srujanika@gmail.com

ନେଇ ପ୍ରଣାମ କରି ସେ ପୁଣି ଘର ଭିତରକୁ ଚାଲିଗଲା– ପଦେ ହେଲେ କିଛି କହିଲାନାହିଁ। କିନ୍ତୁ ଆଜି ତା'ର ଅନ୍ତରର କଥା ଭଗବାନ୍ ହିଁ ଜାଣିପାରିଲେ। ପଛରେ ଥାଇ ଦୁର୍ଗାମଣି ଓ ଅତୁଳ ତା'ର ଯିବା ବାଟକୁ ହସହସ ମୁଖରେ ଚାହିଁରହିଥିଲେ।

## (ଦୁଇ)

ବଡ଼ଭାଇ ଗୋଲକନାଥଙ୍କର ମୃତ୍ୟୁ ପରେ ତାଙ୍କ ବିଧବା ପତ୍ନୀ ସ୍ୱର୍ଣ୍ଣମଞ୍ଜରୀ ଏକମାତ୍ର ସନ୍ତାନରୂପେ ବାପଘର ସମସ୍ତ ସମ୍ପତ୍ତିର ଉତ୍ତରାଧିକାରିଣୀ ହେଲେ ଏବଂ ସେ ସବୁ ସଂପତ୍ତି ଧରି ସାନ ଦିଅର ଅନାଥନାଥକୁ ଆଶ୍ରୟ କରି ରହିଲେ। ମଝିଆଁ ଭାଇ ପ୍ରିୟନାଥ ଗତବର୍ଷ ଠିକ୍ ଏଇ ସମୟରେ ସାନଭାଇ ଅନାଥନାଥ ସାଙ୍ଗରେ କଳିଗୋଳ କରି ସମ୍ପତ୍ତି ଭାଗ କରିନେଲେ; କିନ୍ତୁ ଭଗବାନ୍ ଏକଥା ସହିପାରିଲେନାହିଁ। ଗୋଟିଏ ବର୍ଷ ନପୂରୁଣୁ ସାତଦିନ ଜ୍ୱର ଭୋଗି ବିନା ଚିକିତ୍ସାରେ ମୃତ୍ୟୁବରଣକଲେ।

ମରିବାର ପୂର୍ବ ଦିନ ଗାଆଁଲୋକେ ଯେତେବେଳେ ଦଳ ଦଳ ହୋଇ ତାଙ୍କୁ ଦେଖିବାକୁ ଆସୁଥିଲେ, ସେତେବେଳେ ପ୍ରିୟନାଥ ସଂଜ୍ଞାହୀନ। ଅତୁଳ ଗାଁରେ ନଥିଲା। କଲିକତାରେ ଏ ଦୁଃସମ୍ବାଦ ପାଇ ସେ ଗାଁକୁ ଛୁଟିଆସିଲା। ସେତିକିବେଳେ ରୋଗୀକୁ ଦେଖିବାକୁ ଲୋକଭିଡ଼ ଠେଲି ସେ ଯାଉଥିଲାବେଳେ ଜ୍ଞାନଦା ଧାଇଁ ଆସି ପାଗଳୀଭଳି ତା'ର ଦୁଇପାଦ ଧରି କାନ୍ଦିବାକୁ ଲାଗିଲା। ଏତେ ଲୋକଙ୍କ ସମ୍ମୁଖରେ ଅତୁଳ ଦୁଃଖ ଓ ଲଜ୍ଜାରେ ମ୍ରିୟମାଣ ହୋଇଗଲା। କ'ଣ କରିବ, ଭାବିପାରିଲାନାହିଁ। କିଛି ସମୟ ପରେ ଅତୁଳ ଯେତେବେଳେ ଜ୍ଞାନଦାକୁ ସାନ୍ତ୍ୱନା ଦେଇ ତାକୁ ଧରି ଉଠାଇବାକୁ ଚେଷ୍ଟାକଲା, ଜ୍ଞାନଦା ଅତୁଳର ପାଦ ଦୁଇଟିକୁ ଜାବୁଡ଼ି ଧରି କାନ୍ଦି କାନ୍ଦି କହିଲା, ''ବାପାଙ୍କର ଏ ସମୟରେ ଆପଣ ତାଙ୍କୁ ସାନ୍ତ୍ୱନା ଦେଇ ଯାଆନ୍ତୁ, ଯେପରିକି ସେ ମୋ' ଚିନ୍ତାରୁ ମୁକ୍ତ ହୋଇ ଶାନ୍ତିରେ ମରନ୍ତୁ। ତୁମଠୁଁ ମୁଁ

Digitized by srujanika@gmail.com

ଆଉ କିଛି ଚାହୁଁ ନାହିଁ।'' ଏହା କହିଲାବେଳେ ତା'ର କ୍ରନ୍ଦନରୋଳ ଦ୍ୱିଗୁଣିତ ହୋଇପଡ଼ିଲା।

ଜ୍ଞାନଦାର ପିତା ଆଜି ଅନ୍ତିମ ଶଯ୍ୟାରେ। ଏପରି ଦୁଃଖଦ ଅବସ୍ଥାରେ ସେ ଜ୍ଞାନହରା ହୋଇପଡ଼ି ଏତେ ଲୋକଙ୍କ ସମ୍ମୁଖରେ କ'ଣ ଯେ ସେ କରିଛି, କ'ଣ କହୁଛି, କିଛି ଠିକ୍ କରି ପାରୁନାହିଁ। ସେ ଅତୁଳର ଗୋଡ଼ ତଳେ କେବଳ ମୁଣ୍ଡପିଟି କାନ୍ଦିବାରେ ଲାଗିଲା। ଏତେ ଦୁଃଖରେ ଅତୁଳ କିନ୍ତୁ ଭାଙ୍ଗିପଡ଼ିନଥିଲା। ସେ ଜ୍ଞାନଦାକୁ ବୁଝାଇ କହିଲା, ''ଜ୍ଞାନଦା! ଟିକିଏ ତୁନି ହୁଅ। ମୋର ଯାହା କହି-ବାର କଥା, ମୁଁ କହୁଛି।'' ସେ ପ୍ରିୟନାଥଙ୍କ ଶଯ୍ୟା ନିକଟକୁ ଯାଇ ଦେଖିଲା, ମାଉସୀ ସ୍ୱାମୀଙ୍କ ପାଦତଳେ ବସି କାନ୍ଦୁଛନ୍ତି। ଅତୁଳକୁ ଦେଖି ସେ ଆହୁରି ଜୋର୍‌ରେ ଭୋ-ଭୋ ହୋଇ କାନ୍ଦିବାରେ ଲାଗିଲେ।

ତାଙ୍କ ପଡ଼ୋଶୀ ନୀଳକଣ୍ଠ ଚାଟାର୍ଜୀ ପାଖରେ ଥିଲେ। ସେ କହିଲେ, ''ପ୍ରିୟନାଥଙ୍କର ଏବେ ମଧ୍ୟ ହୋସ୍ ଅଛି। ତୁମର ଯାହା କହିବାର କଥା ବଡ଼ପାଟିରେ କୁହ— ସେ ବୁଝିପାରିବେ।'' ତାଙ୍କ କଥାକୁ ଅନ୍ୟମାନେ ସମର୍ଥନ କଲେ।

ଏତେ ଲୋକ ସମବେତ ହୋଇଥିବା ଦେଖି ଅତୁଳ ପ୍ରଥମେ ଆସି ବିରକ୍ତ ହେଉଥିଲା। ତା'ପରେ ନୀଳକଣ୍ଠଙ୍କର ଏଭଳି କଥାରେ ସେ ରାଗିଯାଇ କହିଲା, ''ଆପଣମାନେ ବେକାରରେ କାହିଁକି ଭିଡ଼ ଜମାଇଛନ୍ତି କହିଲେ? କେହି ତ ଜଣେ କିଛି ହେଲେ ଉପକାର କରିପାରିବେନି! ଦୟାକରି ବାହାରକୁ ଗଲେ।''

ନୀଳକଣ୍ଠ ଉତ୍ତେଜିତ ହୋଇ କହିଲେ, ''କ'ଣ କହିଲୁ? ପଡ଼ୋଶୀର ବିପଦରେ ପଡ଼ୋଶୀ ଠିଆହେବନି? ତୁମେ ଏପରି କେଉଁ ଉପକାର କରିବ ଯେ, ଯାଇ ସିଧା ବିଛଣାରେ ବସିପଡ଼ିଲ?

''ମୁଁ ଉପକାର କରିବି କି ନାହିଁ, ସେକଥା ମୁଁ ଜାଣେ। ଆପଣମାନେ ଚାରିପଟୁ ଘେରିକରି ଥିବାରୁ ରୋଗୀ ଖୋଲା ପବନ ଟିକେ ପାଇପାରୁନାହିଁ। ଆପଣମାନେ ସମସ୍ତେ ସମସ୍ତେ ବାହାରକୁ ଯାଆନ୍ତୁ।''

Digitized by srujanika@gmail.com

ତା' କଥା ଶୁଣି ନୀଳକଣ୍ଠ ପୁଣି କହିଲେ, "କାଲିକା ପିଲାର ସାହସ ଦେଖ ?" କେହି ଜଣେ ପଛରୁ କହିଲା, "ପିଲା ପରା ବି. ଏ. ପାଶ୍ କରିଛି– ସାହସ ହେବନି ?" ଗୋଟିଏ ପିଲା ଉଙ୍କିମାରି ଦେଖୁଥିଲା– ଅତୁଳ କାହାରି କଥା ନଶୁଣି ସେ ପିଲାଟିକୁ ଠେଲିଦେଲା । ଜଣଙ୍କ ଦେହରେ ପିଲାଟି ଧକ୍କା ବାଜିବାରୁ ସେ ଲୋକଟି ପିଲାଟିକୁ ଗାଳିଦେଇ ଚାଲିଗଲା । ଅତୁଳ ମୁମୂର୍ଷୁ ପ୍ରିୟନାଥଙ୍କୁ କ'ଣ ଯେ ଶେଷକଥା ଶୁଣାଇବ, ନୀଳକଣ୍ଠ ପ୍ରଭୃତି ପଡ଼ୋଶୀମାନେ ସେ ଆଶା ଆଉ ନଦେଖି ନିଜ ନିଜ ବାଟରେ ଘରକୁ ଫେରିଲେ ।

ବାହାରର ସବୁଲୋକ ଚାଲିଯିବାପରେ ଅତୁଳ ମୁମୂର୍ଷୁ ପ୍ରିୟନାଥଙ୍କ ମୁହଁ ପାଖକୁ ମୁହଁ ନେଇ ଡାକିଲା, "ମଝିଆଁ ମଉସା, ମୋତେ ଚିହ୍ନିପାରୁଛ ?"

ପ୍ରିୟନାଥ ରକ୍ତବର୍ଣ୍ଣ ଚକ୍ଷୁ ମେଲି ଅସ୍ପଷ୍ଟ ସ୍ୱରରେ କହିଲେ, "ଅତୁଳ !"

ଅତୁଳ ପଚାରିଲା, "ଟିକେ ଭଲଲାଗୁଛି ?"

–"ନାଁ . . ."

ଅତୁଳର ଦୁଇ ଆଖି ଲୋତକରେ ଭରିଗଲା । ସେ କୋହ ସମ୍ଭାଳିନେଇ କହିଲା, "ମଝିଆଁ ମଉସା, ଆପଣଙ୍କୁ ଶେଷ ମୁହୂର୍ତ୍ତରେ ଜଣାଇଦେଉଛି– ଜ୍ଞାନଦାର ଭାର ଆଜିଠାରୁ ମୁଁ ନେଲି ।"

ପ୍ରିୟନାଥ ତା'କଥା କିଛି ବୁଝିପାରିଲେନାହିଁ । ଏପଟ ସେପଟ ଚାହିଁ କହିଲେ, "ଜ୍ଞାନଦା କାହିଁ ?"

ଦୁର୍ଗାମଣି ପାଖରେ ବସି କାନ୍ଦୁଥିଲେ । ସେ କହିଲେ, "ଜ୍ଞାନଦାକୁ ଡାକିବି ?"

ପ୍ରିୟନାଥ ପ୍ରଥମ କଥାଟା ବୁଝିପାରିଲେନାହିଁ । ଶେଷରେ କହିଲେ, "ନା ଥାଉ ।"

ଦୁର୍ଗାମଣି କାନ୍ଦି କାନ୍ଦି କହିଲେ, "ଅତୁଳ କ'ଣ କହିଲା, ବୁଝିଲ ? ସେ ଜ୍ଞାନଦାର ଭାର ନେଲା । ହତଭାଗିନୀକୁ ତୁମେ ଅନେକ ଗାଳିମନ୍ଦ କରିଛ– ଯିବାପୂର୍ବରୁ ତାକୁ ଆଶୀର୍ବାଦ ଦେଇଯାଅ ।"

Digitized by srujanika@gmail.com

ପ୍ରିୟନାଥ ନିର୍ବାକ୍ ହୋଇ ଚାହିଁରହିଥାନ୍ତି— କିଛିହେଲେ କହିବାକୁ ଶକ୍ତି ପାଉନଥିଲେ। ଅନେକ କଷ୍ଟରେ ଅଚଳ ହାତକୁ ଅତୁଳର ମୁଣ୍ଡରେ ବୁଲାଇଆଣି କଡ଼ ଲେଉଟାଇଲେ। ତାଙ୍କ ମୁହଁରୁ ପଦେହେଲେ ମଧ କଥା ବାହାରିଲା ନାହିଁ। କିନ୍ତୁ ଏହି ଶେଷ ସମୟରେ ତାଙ୍କ ହୃଦୟରୁ ଯେତେ ଯେପରି ଏକ ବିରାଟ ବୋଝ ଉତୁରିଗଲା ବୋଲି ଅତୁଳ ହୃଦୟଙ୍ଗମ କରି କାନ୍ଦିପକାଇଲା। ଅତୁଳର କଥାକୁ ସାକ୍ଷୀ ରହିଲେ ଦୁର୍ଗାମଣି ଓ ଦୁନିଆର କର୍ତ୍ତା ସ୍ୱୟଂ ଭଗବାନ୍।

ପରଦିନ ସଂଧ୍ୟାରେ ଛତିଶ ବର୍ଷ ବୟସରେ ନିଜର ଛବି ବର୍ଷ ବୟସ୍କା ସ୍ତ୍ରୀ ଓ ତେରବର୍ଷର କନ୍ୟାକୁ ଦୁଃଖସାଗରରେ ଭସାଇଦେଇ ବିନା ଚିକିତ୍ସାରେର ପ୍ରିୟନାଥ ଇହଲୀଳା ସମ୍ବରଣ କଲେ।

## (ତିନି)

ପ୍ରିୟନାଥଙ୍କର ଶ୍ରାଦ୍ଧ ପରେ ସାନଭାଇ ଅନାଥନାଥ ବାଧ ହୋଇ ଦୁଇ ଭାଇଙ୍କର ଘର ମଝିରେ ପଡ଼ିଥିବା ପାଚେରିର ଗୋଟିଏ ଦ୍ୱାର ଖୋଲିଲେ। ଦୁର୍ଗାମଣିଙ୍କୁ କହିଲେ, ‘‘ଭାଇ ମୋ ସହ ଯେତେ ଶତ୍ରୁତା କଲେ ମଧ ତୁମକୁ ଦୁଇବେଳା ଖାଇବାକୁ ଦେବାକୁ ମୋର କୁଣ୍ଠା ନାହିଁ। କିନ୍ତୁ ତୁମର ଏତେ ବଡ଼ ଝିଅ, ତା’ର ବିଭାଘର ଭାର ମୁଁ ତୁଲାଇ ପାରିବିନାହିଁ। ଦରମା ମୋର ମାସକୁ ଦେଢ଼ଶହ ଟଙ୍କା। ପିଲାଛୁଆ ମୋର ଗୁଡ଼ିଏ। ତା’ଛଡ଼ା ମୋ’ ଝିଅର ବୟସ ଆସି ତେରବର୍ଷ ହେଲାଣି। ସେଇଥିପାଇଁ କ’ଣ କହୁଛି କି, ତମେ ଥରେ ହରିପାଲ ଯିବା ଉଚିତ।’’

ଦୁର୍ଗାମଣି ଭୟ ଓ ସଙ୍କୋଚରେ କହିଲେ, ‘‘ମୋ ଭାଇଙ୍କ ଅବସ୍ଥା ତ ତୁମେ ଜାଣିଛ। ତାଙ୍କର କିଛି ହେଲେ ନାହିଁ। ମୋର ଏତେବଡ଼ ଦୁଃଖରେ ସେ ଦେଖାକଲେନାହିଁ। ତା’ଛଡ଼ା କିଛି ନନେଇ ମୁଁ ଅବା ଖାଲିହାତରେ କେମିତି ଯିବି ?’’

ବଡ଼ବୋହୂ ସ୍ୱର୍ଣ୍ଣମଞ୍ଜରୀ ପାଚେରି ପାଖରେ ଠିଆହୋଇଥିଲେ।

Digitized by srujanika@gmail.com

ସେ ଗଳାଝାଡ଼ି କହିଲେ, "ତୋ' ଭାଇଙ୍କ ଅବସ୍ଥା ଭଲ ନୁହେଁ– ସେକଥା ଜାଣିଛୁ। ଏଣେ ଦିଅର ଅବସ୍ଥା ତ ଦେଖୁଛୁ। ମୁଁ ମୋର ସଂସାର କେମିତି ଚଳାଉଛି, ଭଗବାନ୍ ଜାଣନ୍ତି। ତୋ' ବେକରେ ଏତେ ବଡ଼ ଝିଅ ବନ୍ଧାହୋଇଛି– କିଏ ଯାଚିହୋଇ ସାହାଯ୍ୟ କରିବ କହିଲୁ ? ସେଥିପାଇଁ ଅଭିମାନ କରି ରହିଲେ ଚଳିବନାହିଁ।"

ଦୁର୍ଗାମଣି କହିଲେ, "ମୋର ମାନ ଅଭିମାନ କାହିଁ ?"

ସ୍ୱର୍ଣ୍ଣମଞ୍ଜରୀ କହିଲେ, "ଯିଏ ଏମିତି କଥା ଚିପି ଚିପି କହେ, ତାକୁ ମୁଁ କେବେ ଖରାପ କଥା କହେନା। ସତକଥା କହୁଛି, ତୁ ରାଗ କର ବା ନକର, ଏଭଳି ପରକଟା ପରୀଭଳି ଝିଅର ବିଭାଘର ଆମେ କରିପାରିବୁ ନାହିଁ। ସାନ ବୋହୂର ତ ଝିଅ– ତାକୁ ଯିଏ ଥରେ ଦେଖିବ ପସନ୍ଦ ନକରି ରହିବନି। ତୋ' ଝିଅର ତ ରୂପ ଦେଖୁଛୁ। ତେଣୁ ହରିପାଲ ଯାଇ ଯେପରି ହେଉ ଚଷାଭୁଷା ପିଲାଟିଏ ଦେଖି ନିମନ୍ତ୍ରଟା ଉଠେଇଦେ। ଶୁଣିଛି, ସେଠାକାର ଲୋକେ ଝିଅର ରୂପ ଗୁଣ ଦେଖନ୍ତିନାହିଁ– ଝିଅଟିଏ ପାଇଲେ ବାହାକରିନିଅନ୍ତି।"

ଦୁର୍ଗାମଣି ହୃଦୟଙ୍ଗମ କଲେ, ଯେଉଁ ବିଷଜ୍ୱାଳା ପାଇଁ ଦିନେ ଭାଇ ଭାଇ ପୃଥକ୍ ହୋଇଗଲେ, ସେହି କଥା ଆଜି ପୁଣି ଉତ୍‌ଥାପନ ହେଉଛି। ସେ ଭୟରେ ଚୁପ୍ ହୋଇଗଲେ।

ସ୍ୱର୍ଣ୍ଣମଞ୍ଜରୀ କହିଲେ, "ତୋତେ କେହି ନିନ୍ଦା କରୁନାହାନ୍ତି– ନିନ୍ଦା କଲେ ଆମକୁ କରିବେ। ବି.ଏ. ପାଶ କରିନଥିବା ଜ୍ୱାଇଁ ଯଦି କରିବ, ତେବେ ଚାରିଆଡ଼େ ପ୍ରଚାର ହୋଇଯିବ। ସମସ୍ତେ କହିବେ– ଏ'ଟା କେମିତ କଲ ? ଘରେ ମୁରବି ଦେଢ଼ଶୁର ଥାଉଁ ଥାଉଁ ଦୁର୍ଗାପ୍ରତିମା ଭଳି ଝିଅକୁ ଭସେଇଦେଲ ! ସତ କି ମିଛ କହିଲ ଅନାଥ ?"

"ସତ କଥା"– କହୁ କହୁ ଅନାଥନାଥ ଅଫିସ ସମୟ ଡେରି ହେଉଛି ଦେଖି ଚାଲିଗଲେ।

ସ୍ୱର୍ଣ୍ଣମଞ୍ଜରୀ କହିଲେ, "ଏ ସମୟରେ ଯାହାହେଉ ପଛକେ, ତୁ ତୋ' ଭାଇକୁ ଛୋଡ଼ିବା ଉଚିତ। ସେଥିରେ କିଛି ଲାଜ କଥା

Digitized by srujanika@gmail.com

ନାହିଁ। ଜ୍ଞାନଦା ବାପାଙ୍କର ତ ମାସକୁ ମୋଟେ ତିରିଶ ଟଙ୍କା ଦରମା ଥିଲା। ଏ ଅଞ୍ଚଳରେ ତାଙ୍କୁ କିଏ ଚିହ୍ନିଥିଲା ? କିନ୍ତୁ ଏମାନଙ୍କୁ ସମସ୍ତେ ଚିହ୍ନନ୍ତି। କ'ଣ କହୁଥିଲି କି, କାଲି ଶୁଭଦିନ ଅଛି। ତୁ କାଲି ଚାଲିଯାଆ।''

ଦୁର୍ଗାମଣି ମନେ ମନେ ଅତୁଳ କଥା ଚିନ୍ତା କରିବାକୁ ଲାଗିଲେ; କିନ୍ତୁ ବଡ଼ଯାଆ ଆଗରେ ତାହା ପ୍ରକାଶ କଲେନାହିଁ। କାରଣ ବଡ଼ଯାଆ ସମ୍ପର୍କରୁ ଅତୁଳ ସାଙ୍ଗରେ ତାଙ୍କର ସ୍ନେହ-ମମତା ଘଟିଚି। ସ୍ୱର୍ଣ୍ଣମଞ୍ଜରୀ ଅତୁଳ ମାଆଙ୍କର ମାମୁଝିଅ ଭଉଣୀ।

ଘର ଭିତରକୁ ଯାଇ ଦେଖିଲେ ଝିଅ ଘରେ ବସିଛି। ତା' ପାଖକୁ ଧାଇଁଯାଇ କହିଲେ, ''ବଡ଼ବୋଉ ଏବେ ଯାହା କହୁଥିଲେ ଶୁଣୁଥିଲୁ ତ ?''

ଜ୍ଞାନଦା ମୁଣ୍ଡ ହଲାଇ ସମ୍ମତି ଜଣାଇ କହିଲା, ''ମାମୁଘରକୁ ତୁ ତ କେବେ ଯାଉନୁ। ଆମର ଏ ବିପଦ ସମୟରେ ଗଲେ କ'ଣ ହୁଅନ୍ତାନାହିଁ ?''

ଦୁର୍ଗାମଣି କହିଲେ, ''ମୋ' ବୋଉ ଆରପାରିରେ। ଭାଇ କେବେହେଲେ ଭଉଣୀ ବୋଲି ମୋ' ଘରକୁ ଆସିଲେନାହିଁ। ଆମର ଏତେ ବଡ଼ ବିପଦ ଜାଣି ଆସିବା ଦୂରେ ଥାଉ, ଚିଠି ଖଣ୍ଡେ ମଧ ଦେଲେନାହିଁ। କେମିତି ଆପଣାଛାଏଁ ତାଙ୍କ ଘରକୁ ଯିବି, କହ ?''

—''ଦୁଃଖୀ, ଅଭାବୀ ଲୋକର କେହି କେବେ ଖବର-ଅନ୍ତର ବୁଝନ୍ତିନାହିଁ ମା'! ମାମୁ ଆମକୁ ସାହାପକ୍ଷ ହେଉନାହାନ୍ତି କି ଏମାନେ ନିଜର ହୋଇ ମଧ ତତ୍ତ୍ୱ ନେଉନାହାନ୍ତି। ଦୁଃଖୀର ମାନ ଅଭିମାନ କ'ଣ ? ଚାଲ, ଆମେ ମାମୁଘରେ ଯାଇ ରହିବା।''

ଜ୍ଞାନଦାର କଥା ଶୁଣି ଦୁର୍ଗାମଣିଙ୍କ ଆଖିରୁ ଲୁହ ବୋହିପଡ଼ିଲା। ଜ୍ଞାନଦା ଲୁହ ପୋଛିଦେଇ କହିଲା, ''କେବଳ ମୋ' ଲାଗି ତୁ ଏଠା ଛାଡ଼ି କୁଆଡ଼େ ଯାଉନାହୁଁ— ନହେଲେ ବଡ଼ବୋଉଙ୍କ କଥା ତୁ କେବେ ସହି ରହିପାରନ୍ତୁ ନାହିଁ। ମୁଁ କହୁଛି, ଚାଲ ଏଠୁ ଚାଲିଯାଇ କିଛି ଦିନ ପାଇଁ ଅନ୍ୟ କେଉଁଠି ରହିବା। ଏଠି ରହିଲେ ତୁ ମରିଯିବୁ।''

Digitized by srujanika@gmail.com

ଦୁର୍ଗାମଣିଙ୍କ ରୋଦନ ଦ୍ୱିଗୁଣିତ ହୋଇଉଠିଲା। ଝିଅକୁ କୋଳକୁ ଆଣି ସେ କହିଲେ, ''ସତ କହୁଛି ମା, ତୋ' ଲାଗି ମୁଁ କୁଆଡ଼େ ଯାଇପାରୁନାହିଁ। ତୁ ନଥିଲେ ମୁଁ ଏମାନଙ୍କ କଥା ସହି ନପାରି ଇଚ୍ଛା ଅନୁସାରେ କୁଆଡ଼େ ଚାଲିଯାଆନ୍ତି।''

—''ସେକଥା ମୁଁ ଜାଣେ ମା'।''

—''ତୋତେ ଗୋଟିଏ କଥା ପଚାରିବି— ସତକଥା କହିବୁ। ବାପାଙ୍କ ମୃତ୍ୟୁଶଯ୍ୟା ନିକଟରେ ଅତୁଳ ତୋତେ କାହିଁକି ଏକଥା କହିଲା ଯେ... ନା ଜ୍ଞାନଦା! ଏଭଳି ବିପଦ ସମୟରେ ଏମିତି ମୁହଁ ଢାଙ୍କି ରହିବା ଠିକ୍ ନୁହେଁ— ଲଜ୍ଜା କରିବାର ସମୟ ଏ ନୁହେଁ। ସତ କହ ମା, ବାପାଙ୍କ ମୃତ୍ୟୁ ସମୟରେ ସେ ଏମିତି ଭରସା ଦେଲା କାହିଁକି ? ଆଉ ତୁ ବା କାହିଁକି ତାର ପାଦତଳେ ପଡ଼ିଲୁ ?''

ଜ୍ଞାନଦା ମୁହଁ ତଳକୁ ପୋତି କହିଲା— ''ମୁଁ କିଛି ଜାଣେ ନାହିଁ ମା'!'' ଦୁର୍ଗାମଣି ଯେତେ ଚେଷ୍ଟା କଲେ ବି ଜ୍ଞାନଦା ଆଉ କିଛି ନକହିବାରୁ ସେ କହିଲେ, ''ସତ କହୁଛି ମା'! ମୋର କିଛି କଥା ମନେରହେନାହିଁ; କିନ୍ତୁ ସେଦିନର କଥା ମୋର ଏବେ ସୁଦ୍ଧା ମନେଅଛି। ସତ କହିବୁ ମା, ମୁଁ ଯାହା ଭାବିଛି ସେ କଥା ମିଛ ନୁହେଁ ତ ? ମୁଁ ଆଜି ପର୍ଯ୍ୟନ୍ତ ସ୍ୱପ୍ନ ଦେଖୁନାହିଁ ତ ?''— କହୁ କହୁ ଝିଅର ହାତକୁ ଜାବୁଡ଼ି ଧରିପକାଇଲେ।

ଜ୍ଞାନଦା କହିଲା, ''ତାଙ୍କ ଧର୍ମ ତାଙ୍କ ପାଖରେ।''

ଆନନ୍ଦ ଆବେଗରେ ଦୁର୍ଗାମଣିଙ୍କ ଚକ୍ଷୁରୁ ଲୋତକଧାର ଝରିପଡ଼ିଲା। ସେ କହିଲେ, ''ମୋତେ ଆଉ ସଂଶୟ-ସାଗରରେ ବୁଡ଼ାଇ ରଖନା ମା'! ସତ କହ। ଆଜି ତୋ' ବାପାଙ୍କ ଲାଗି ମୁଁ ମନଖୋଲି କାନ୍ଦେ। ଆରପୁରରେ ଥାଇ ମୋର କାନ୍ଦଣା ସେ ଶୁଣିପାରୁଥିବେ।''

ଜ୍ଞାନଦା ଚୁପ୍ ଚୁପ୍ କହିଲା, ''ତୁ କାନ୍ଦୁ— ମୁଁ ତୋତେ କାନ୍ଦିବାକୁ ବାରଣ କରୁନାହିଁ। ବାପାଙ୍କୁ ଜଣାଇବାକୁ କହିଥିଲି— ସେ ତ ନିଜେ ଜାଣିଛନ୍ତି। ଏବେ ତାଙ୍କ ଧର୍ମ ତାଙ୍କ ପାଖରେ।''

ଏଥର ଦୁର୍ଗାମଣି ଧୈର୍ଯ୍ୟ ଧରିପାରିଲେନାହିଁ। ଝିଅର ଗାଲରେ

Digitized by srujanika@gmail.com

ଅନେକ ଚୁମ୍ବନ ଦେଇ ଲୁହ ଝରାଇବାକୁ ଲାଗିଲେ। ଆଖି ପୋଛୁ ପୋଛୁ କହିଲେ, "ସତ କଥା— ଅତୁଳ ଦୀର୍ଘଜୀବୀ ହେଉ। ସେ ସତ୍ୟ ଓ ଧର୍ମ ପଥରେ ଥାଉ। ତୁ ଯେ ଦିନେ ତାକୁ ମରଣ ପଥରୁ ଫେରାଇ ଆଣିଥିଲୁ, ସେ କଥା ମୋର ମୋଟେ ମନେପଡୁନଥିଲା। ସେ ବର୍ଷ ବେରିବେରି ମହାମାରୀ ରୋଗ ବ୍ୟାପିଥାଏ। ଆଗେ ତା' ମା' ରୋଗରେ ପଡ଼ିଲା, ତା'ପରେ ଅତୁଳ। ଅତୁଳର ଆଶା ତ ସମସ୍ତେ ଛାଡ଼ିଦେଇଥିଲେ। କୋକୁଆଭୟ। ସେତେବେଳେ ତାଙ୍କ ଘରକୁ କେହି ଯାଉନଥିଲେ। ତୁ ଛୋଟ ଝିଅଟିଏ ହୋଇ ଦିନରାତି ଯମ ସଙ୍ଗେ ଲଢ଼େଇ କରି ତାକୁ ଯମପୁରରୁ ଫେରାଇ ଆଣିଥିଲୁ। ସାବିତ୍ରୀ ଭଳି ତୁ ଯେତେବେଳେ ତାକୁ ଯମ ହାତରୁ ଫେରାଇ ଆଣିଛୁ, ସେତେବେଳେ ଭଗବାନ୍ ତାକୁ କ'ଣ ଅନ୍ୟ କାହା ହାତରେ ଦେଇଦେବେ ? ଯଦି ଚନ୍ଦ୍ର ସୂର୍ଯ୍ୟ ଆତଯାତ ହେଉଥିବେ, ତେବେ ତାହା କେବେ ଅନ୍ୟଥା ହେବନି ?"

ଟିକିଏ ରହି ଉଲ୍ଲସିତ ହୋଇ ପୁଣି କହିଲେ, "ମା', ମୋତେ ଏବେ ଯୁଆଡ଼େ କହିବୁ ମୁଁ ଯିବି; କିନ୍ତୁ ଅତୁଳର ବିନାନୁମତିରେ ତୁ ତ ଆଉ କୁଆଡ଼େ ଯାଇପାରିବୁ ନାହିଁ! ପୁରୀରୁ ସେଦିନ ଫେରି ତୋତେ କାଚ ଦେବା ପାଇଁ ଆଳ କରି ଆମ ଘରକୁ ଆସିଥିଲା— ମୁଁ ସେକଥା ଆଜି ବୁଝିପାରୁଛି। ଆଗୋ, ତୁମେ ଆଉ କେତେଟା ଦିନ ନରହି ଜ୍ଞାନଦାକୁ ଛାଡ଼ି କୁଆଡ଼େ ଚାଲିଗଲ ? ଏ ଶୁଭ କାମ ଦେଖିଯାଇଥାନ୍ତ।" —ଏହା କହୁ କହୁ ସେ ପୁଣି କାନ୍ଦିଉଠିଲେ।

—"ଆଲୋ ଜ୍ଞାନଦାବୋଉ ?" ସ୍ୱର୍ଣ୍ଣମଞ୍ଜରୀ ଡାକି ଡାକି ଆସିଲେ।

ସ୍ୱର୍ଣ୍ଣମଞ୍ଜରୀଙ୍କ ଡାକ ଶୁଣି ଦୁର୍ଗାମଣି ପଣତକାନିରେ ଚଟ୍‌କରି ଆଖିର ଲୁହପୋଛି କହିଲେ, "ମୋତେ ଡାକୁଥିଲ ଅପା ?"

ବଡ଼ବୋଉ ବଡ଼ପାଟିକରି କହିଲେ, "ଦୁଃଖ ପଡ଼ିଛି ବୋଲି ତୁମକୁ ସିନା ଭୋକଶୋଷ ନାହିଁ— ଏ ପରିବାରରେ ଆଉ କ'ଣ କେହି ଖାଇବେ ନାହିଁ? ବାହାରକୁ ଆସି ଦେଖିଲୁ, ସମୟ ଆସି କେତେ ହେଲାଣି !"

Digitized by srujanika@gmail.com

ଦୁର୍ଗାମଣି ବ୍ୟସ୍ତହୋଇ ଘରୁ ବାହାରି ଆସି ଦେଖିଲେ ବେଳ ଅନେକ ହୋଇଗଲାଣି। ସେ ଲାଜର ଝିଅକୁ ଡାକି କ'ଣ କହିବାକୁ ଯାଉଥିଲେ– ସ୍ୱର୍ଣ୍ଣମଞ୍ଜରୀ ରାଗିଯାଇ କହିଲେ, ''ଘରର କାମଦାମ ସାରି ବେଳ ପାଇଲେ ଝିଅକୁ ସାନ୍ତ୍ୱନା ଦେବାକୁ ମୁଁ ମନାକରୁନି। କିନ୍ତୁ ତା'ବୋଲି ଅନ୍ୟ ପିଲାମାନେ ଭୋକ-ଉପାସରେ ରହିଲେ ପିତ ପଡ଼ିଯିବ। ଏପରି କଥା ମୋ' ଦ୍ୱାରା ହୋଇପାରିବ ନାହିଁ।'' –ଏହା କହି ସନ୍ତାନହୀନା ବଡ଼ବୋହୂ ସାନବୋହୂର ପିଲାମାନଙ୍କ ପ୍ରତି ମାତୃସ୍ନେହର ପରାକାଷ୍ଠା ଦେଖାଇ ଦୁମ୍‌ଦୁମ୍ ହୋଇ ସେଠାରୁ ଚାଲିଗଲେ।

ଦିଅର ଅନାଥନାଥଙ୍କ ସହ ଏକାଠି ମିଶି ଚଳିବାଦିନଠାରୁ ଦୁର୍ଗାମଣିଙ୍କ ଉପରେ ରୋଷେଇବାସର ଦାୟିତ୍ୱ ପଡ଼ିଥିଲା। ତେଣୁ କାମରେ ଛୁଟି ମିଳିବାରୁ ସ୍ୱର୍ଣ୍ଣମଞ୍ଜରୀ ଗାଆଁସାରା ବୁଲାବୁଲି କରନ୍ତି; ବହୁତ ଖର୍ଚ୍ଚ ହେଉଛି ବୋଲି ଚାରିଆଡ଼େ ଗପନ୍ତି। ସାନବୋହୂ ଉପନ୍ୟାସ ପଢ଼ି, ଗପକରି ଦିନ ବିତାଇଦିଅନ୍ତି।

ଅନାଥନାଥ ସକାଳ ସାଢ଼େଆଠଟା ଟ୍ରେନ୍‌ର ସବୁଦିନିଆ ପାସେଞ୍ଜର୍। ତେଣୁ ସକାଳୁ ଉଠି ତାଙ୍କ ପାଇଁ ରୋଷେଇ କରିଦେବା ଏ ପରିବାରରେ ଅଶାନ୍ତିର କାରଣ ରୂପେ ଦେଖାଦେଉଥିଲା। ଏଥିପାଇଁ ବଡ଼ବୋହୂ ଓ ସାନବୋହୂ ଭିତରେ ସବୁବେଳେ କଳିକଜିଆ ଉପୁଜେ। ଏମିତି ଅନେକ ଦିନ ବିତିଯିବା ପରେ ଏଇ କେତେଦିନ ହେଲା ଉଭୟଙ୍କ ମଧ୍ୟରେ ଟିକିଏ ଭଲ ପଡୁଥିଲା; କିନ୍ତୁ ଆଜି ପୁଣି ସେହି ମନୋମାଳିନ୍ୟ ଆରମ୍ଭ ହେବାକୁ ଲାଗିଲା। ଆଜି ଦିନ ସାତଟା ଆସି ହେଲାଣି। ଚାକରାଣୀ କେତେବେଳୁ କୋଇଲା ଆଞ୍ଚ ଲଗାଇ ଦେଇ ସାରିଲାଣି। ନିଆଁ ଆଞ୍ଚ ବି ଉଠିଲାଣି। ସାନବୋହୂ ନିଦରୁ ଉଠୁ ଉଠୁ ଚାକରାଣୀ କହିଲା, ''ମା ! ଆଞ୍ଚ ଉଠିଲାଣି– ରୋଷେଇ ଆରମ୍ଭ କରନ୍ତୁ। ବାବୁ ଅଫିସ୍ ଯିବେ ଯେ।''

ସାନବୋହୂ କହିଲେ, ''କାହିଁକି ମଝିଆଣୀ କ'ଣ କରୁଛନ୍ତି କି ? ଦିନ ସାତଟା ଆସି ବାଜିଲାଣି। ତାଙ୍କର କ'ଣ ମନେନାହିଁ ନା କ'ଣ ?''

Digitized by srujanika@gmail.com

—"ମନେ କ'ଣ ରହିବ? ରାତିରୁ ଉଠି ମାଆ-ଝିଅ କ'ଣ ଗଣ୍ଠିଲିପତ୍ର ବନ୍ଧାବନ୍ଧି କରୁଛନ୍ତି । ବୋଧହୁଏ ହରିପାଲ କି କୁଆଡ଼େ ଯିବେ ।"

ସାନବୋହୂର ଗତକାଲି କଥା ମନେପଡ଼ିଗଲା । ସେ ପାଟିକରି କହିଲା, "କହିଦେଲି ବୋଲି ଚାଲିଯିବେ ନା କ'ଣ? ବାବୁଙ୍କର ଓ ବଡ଼ଅପାଙ୍କର ଅନୁମତି ନେଇଛନ୍ତି ତ?"

—"ସାନବାବୁଙ୍କର ଅନୁମତି ନେଇଛନ୍ତି କି ନାହିଁ, ମୁଁ ଜାଣେନା । ତେବେ ବଡ଼ବୋହୂ ସେମାନଙ୍କୁ ଆଜି ଯିବାକୁ କହୁଥିବାର ମୁଁ ଶୁଣିଛି ।"

—"ତେବେ ତାଙ୍କୁ ଯାଇ କହ ସାଢ଼େ-ଆଠଟା ଭିତରେ ସାନବାବୁଙ୍କୁ ଖାଇବାକୁ ଦେବାକୁ ।" —କହୁ କହୁ ତମତମ ହୋଇ ସେଠାରୁ ଚାଲିଗଲେ ।

—"କ'ଣ କହିଲେ? ସେମାନେ ରହିଲେ ସିନା କହିବି? ସେ ତ ଗଙ୍ଗାସ୍ନାନପାଇଁ ଯାଇଚ଼ନ୍ତି ।" —ଏହା କହି ସେ ତା' କାମରେ ଚାଲିଗଲା ।

ବାଧହୋଇ ସାନବୋହୂଙ୍କୁ ଫେରିବାକୁ ହେଲା— କାରଣ ତା' ରାଗ କଥା ସ୍ୱାମୀ ବୁଝିବେ ନାହିଁ । ଯଦି ସେ ନିଜେ ରୋଷେଇ ନ କରୁଛି, ତେବେ ସ୍ୱାମୀ ତା'ର ଉପବାସକୁ ଅଫିସ୍‌କୁ ଯିବେ । ସେ ମଝିଆଁବୋହୂ ଘରପାଖକୁ ରାଗ ତମତମ ହୋଇ ଯାଇ କହିଲା, "ତମେ ଯିବ ତ— କିନ୍ତୁ ଏମିତି ହଇରାଣ କରି ନଗଲେ କ'ଣ ଚଳନ୍ତା ନାହିଁ?"

ସାନବୋହୂର ଏପରି ଆକସ୍ମିକ ଅଭିମାନ କଥା ଶୁଣି ଦୁର୍ଗାମଣି ଅବାକ୍ ହୋଇଗଲେ । ସାନବୋହୂ କହିଲେ, "ତମେ ଏତେ ସକାଳୁ ଯିବ ବୋଲି ମୁଁ ଜାଣେନାହିଁ । ବଡ଼ଅପା ଯାଇଛନ୍ତି ଗଙ୍ଗାସ୍ନାନ କରିବାକୁ । ମୁଁ ତ ଏବେ ବିଛଣାରୁ ଉଠିଲି । ତେବେ ତାଙ୍କୁ ଠିକ୍ ସମୟରେ ଆଜି କିଏ ରାନ୍ଧିକରି ଦେବ କହିଲ?"

ଏହି ସମୟରେ ଅତୁଳ ଆସି ମାଉସୀମାନଙ୍କୁ ପ୍ରଣାମ କରି ବାରଣ୍ଡାରେ ଠିଆହେଲା ।

ସାନବୋହୂ ପଚାରିଲେ, "ତୁ ଏତେ ସକାଳୁ କେମିତି ରେ

Digitized by srujanika@gmail.com

ଅତୁଳ ?''

ଟେଲିଗ୍ରାମ୍ ପାଇ ଅତୁଳ ଘରକୁ ନଯାଇ ସିଧା ମାଉସୀ ଘରକୁ ଆସିଛି। ସେ କହିଲା, ''ଆଜି ମଝିଆଁ ମାଉସି ହରିପାଲ ଯାଇ ଗଙ୍ଗାଯାତ୍ରା କରିବେ। ଶେଷ ସମୟରେ ତାଙ୍କୁ ଟିକେ ଦେଖିବାକୁ ମନ ବଳିଲା। ହରିପାଲ– ମ୍ୟାଲେରିଆ ରୋଗର ଖଣି। ତା'ପରେ ଆଶ୍ୱିନ ମାସରେ ତୁମକୁ ଏପରି ଶୁଭବୁଦ୍ଧି କିଏ ଦେଲା ? ଆରେ ବାଃ... ସବୁ ଜିନିଷ ବନ୍ଧାବନ୍ଧି ସରିଲାଣି ତ!'' ଏହା କହି ଘର ଭିତରକୁ ଚାହିଁ ଦେଖିଲା ଯେ ଜ୍ଞାନଦାର ଆଖିରୁ ଧାର ଧାର ଲୁହ ବହିଯାଉଛି।''

ସାନମାଉସୀ କହିଲେ, ''ଆରେ ଅତୁଳ, ତୁ କିପରି ଏ ଖବର ପାଇଲୁ।''

–''ମୁଁ କେମିତି ଖବର ପାଇଲି ? ଚିଠି ପାଇ ତ ଆସିଲି।''

ବଡ଼ବୋହୂ ଗଙ୍ଗାସ୍ନାନ କରିଯାଇଥିଲେ। ଘରେ ପାଦ ଦେଉ ଦେଉ ରୋଷେଇ ହୋଇନଥିବା ଖବର ପାଇ ରାଗରେ ସେ ଅଗ୍ନିଶର୍ମା ହୋଇଗଲେ। ତେଣୁ ସେ ମଝିଆଁ ବୋହୂକୁ ଶୁଣାଇ ଶୁଣାଇ କହି କହି ଆସୁଥିଲେ, ''ଅତି ଅନ୍ୟାୟ ନକଲେ ଭଗବାନ୍ କ'ଣ କାହାରି କ୍ଷତି କରନ୍ତି ? ତାଙ୍କ ସୃଷ୍ଟ ଏ ସଂସାରରେ ଅଧର୍ମର କେବେ ସ୍ଥାନ ନାହିଁ।'' ମଝିଆଁ ବୋହୂର ଘର ପାଖକୁ ଚାଲିଆସି ରାଗତମତମ ହୋଇ କହିଲେ, ''ତୋ' ଉଦ୍ଦେଶ୍ୟ କ'ଣ ମଝିଆଁ ବୋହୂ, କହ ତ ? ନଖାଇ ନପିଇ ଅନାଥ ଅଫିସ ଯିବେ। ଉପବାସରେ ପେଟରେ ପିତ ଝରି ତାଙ୍କୁ ଜର ହେଉ– ଅଫିସ୍‌ରୁ ଜରଦେହରେ ଘରକୁ ଫେରନ୍ତୁ– ଏଇଆ ତ ? ତା'ପରେ ତୋର ଯେପରି ସର୍ବନାଶ ହୋଇଛି ଆଉ ଜଣକର ସେପରି ସର୍ବନାଶ ହେଉ।''

ଦୁର୍ଗାମଣି ମନେ ମନେ ରାଗିଯାଇ କହିଲେ, ''ମୋର କପାଳ ମନ୍ଦ। ମୋର ସର୍ବନାଶ ହୋଇଛି ବୋଲି ଯେତେ ବଡ଼ ଶତ୍ରୁ ପଛକେ ହେଉ କେହି କେବେ ଏକଥା ମନକୁ ଆଣିବନାହିଁ– ତୁମେ କେମିତି ଏ କଥା ତୁଣ୍ଡରେ ଧରିଲ ? ମୁଁ ତୁମର ଏପରି କ'ଣ କ୍ଷତି କରିଛି

Digitized by srujanika@gmail.com

ଯେ ତୁମେ ମୋତେ ଏମିତି କଟୁକଥା ଶୁଣାଉଛ ?''

ବଡ଼ବୋଉ ହାତଛିଞ୍ଚାଡ଼ି କହିଲେ, ''ତୁ ଯେ କ'ଣ କରିଛୁ ସେ କଥା ପୁଣି ମତେ କହିବାକୁ ହେବ ? ପ୍ରତିଦିନ ସାଢ଼େସାତଟା ବେଳକୁ ରୋଷେଇ ହେଲେ ଅନାଥ ଖାଇକରି ଅଫିସ୍ ଯିବାକଥା – ଆଜି କିଏ ରାନ୍ଧିବ ?''

ଏତେବେଳ ପର୍ଯ୍ୟନ୍ତ ଅତୁଳ ଅବାକ୍ ହୋଇ ଶୁଣୁଥିଲା । ସେ ତାର ବଡ଼ମାଉସିଙ୍କୁ ଭଲ କରି ଚିହ୍ନିଛି; ତାଙ୍କ ସ୍ୱଭାବ ଜାଣିଛି । ସେଥିପାଇଁ ସେ ତାଙ୍କ ସହ ଖୁବ୍ କମ୍ କଥାବାର୍ତ୍ତା କରେ । ଆଜି କିନ୍ତୁ ସେ ତାଙ୍କ କଥା ସହିପାରିଲାନାହିଁ । ସେ କହିଲା, ''ସତ କଥା କହିଲେ, ତୁମେ ରାଗିବ ବଡ଼ମାଉସି । ସେମିତି ଅସୁବିଧା ନହେଲେ ତୁମେ ଘରେ କେହି ଖାଇବାକୁ ରାଜି ହେବେନାହିଁ – ଏ କଥା ତୁମ ପଡ଼ୋଶୀମାନେ ମଧ୍ୟ ଜାଣନ୍ତି । ସେମାନଙ୍କର ତ ଯୋଡ଼ାକପାଳ – ଆଜି କୋଟିଏ ଶୁଭକାମରେ ବାହାରିଲାବେଳେ ମାଆ-ଝିଅଙ୍କୁ କ୍ଷମା କରିଥିଲେ କ'ଣ ଚଳିନଥାନ୍ତା ?''

ଅତୁଳର କଥାରେ ଦୁଇ ଯାଆ ଅବାକ୍ ହୋଇଗଲେ । ଟିକିଏ ପରେ ସ୍ୱର୍ଣ୍ଣମଞ୍ଜରୀ କହିଲେ, ''ଆମ ସାଙ୍ଗରେ କଳି କରିବୁ ବୋଲି କ'ଣ କଲିକତାରୁ ଛୁଟିଆସିଛୁ କିରେ ଅତୁଳ ?''

ସାନବୋହୂ କହିଲେ, ''ସେକଥା ନୁହେଁ । ମଝିଆଣୀକୁ ଆମେ ଯେତେବେଳେ ଗଙ୍ଗାଯାତ୍ରା କରିବାକୁ ହରିପାଲ ପଠାଉଛୁ, ସେତେବେଳେ ସେମାନଙ୍କୁ ଶେଷଥର ପାଇଁ ଦେଖିବାକୁ ପୁଅ ଆସିଛି ।''

–''ଓଃ, ସେଇଥିପାଇଁ ଆସିଚି ?''

ସାନବୋହୂ କହିଲେ, ''ହଁ ପରା ... ସେ ଆସିଲାବେଳୁ ମୁଁ ଭାବୁଛି । ଆମେ କେହି ଜାଣିପାରିଲେ ନାହିଁ – ଅଥଚ ତୁମ ଭଉଣୀର ପୁଅ କଲିକତାରେ ଥାଇ କିପରି ଏତେ କଥା ଜାଣିଲା ଯେ ? ତେବେ ଲୋକେ ଯାହା କୁହାକୁହି ହେଉଛନ୍ତି, ସେସବୁ ମିଛ ନୁହେଁ ।''

ରାଗରେ ଜ୍ଞାନହରା ହୋଇ ସ୍ୱର୍ଣ୍ଣମଞ୍ଜରୀ କହିଲେ, ''ତୋର ଯଦି ଏତେ ଦରଦ – ତେବେ ମାଉସି-ଶାଶୁଙ୍କୁ ଗଙ୍ଗାଯାତ୍ରା କାହିଁକି

Digitized by srujanika@gmail.com

କରାଇବୁ– ଘରେ ନେଇ ରଖୁନୁ। ଗାଁଲୋକେ ସାବାସ୍ କହି ତୋତେ ଧନ୍ୟବାଦଦେବେ।''

ହଠାତ୍ ଏପରି ବଦ୍‌ନାମ କଥା ଶୁଣି ଅତୁଳ ବାହ୍ୟଜ୍ଞାନଶୂନ୍ୟ ହୋଇପଡ଼ିଲା। ସେ ତାଚ୍ଛଲ୍ୟ ସ୍ୱରରେ କହିଲା, ''ଭଲହେଲା ମାଉସି! ତମେ ସବୁ ତ ମୋର ଅତି ଆପଣାର ଲୋକ। ଆଗରୁ ଯେତେବେଳେ ଏକଥା ଜାଣିଲଣି, ଭଲହେଲା। ମଝିଆଁ ମାଉସୀ ଯଦି ମୋ ଘରକୁ ଯିବେ, ତେବେ ସେମାନଙ୍କୁ ମଥାରେ ବସାଇ ନେଇଯିବାକୁ ମୁଁ ପ୍ରସ୍ତୁତ। ଏଥିନେଇ ତୁମ ଗାଁଲୋକେ ଭଲ କହିବେ କି ଛି-ଛାକର କରିବେ– ସେଥିପାଇଁ ମୁଁ ଭ୍ରୂକ୍ଷେପ କରିବି ନାହିଁ।''

ଏପରି କଥା କହିଦେଇ ଅତୁଳ ଯେତିକି ଲଜ୍ଜାବୋଧ କଲା, ତାର ମାଉସୀମାନେ ତା'ଠାରୁ ବେଶି ବିସ୍ମିତ ହୋଇଗଲେ। ଆଉ ଅତୁଳ କିଛି ନକହି ଧୀରେ ଧୀରେ ଘରୁ ବାହାରି ଚାଲିଗଲା।

ବଳଦଗାଡ଼ିଚାଳକ ଯଦୁ ଗାଡ଼ି ଠିଆକରାଇ କହିଲା, ''ମା'! ସମୟ ହୋଇଗଲାଣି– କ'ଣ ଜିନିଷପତ୍ର ଲଦିବା କଥା, ଦିଅନ୍ତୁ। ଏବେ ନବାହାରିଲେ ଗାଡ଼ି ଠିକ୍ ସମୟରେ ଧରିହେବନାହିଁ।'' କାଳବିଳମ୍ୱ ନକରି ସେ ଟ୍ରଙ୍କ ଓ ଗଣ୍ଠିଲିପତ୍ର ଲଦିବାକୁ ଲାଗିଲା। ବଡ଼ବୋହୂ ଓ ସାନବୋହୂ କିଛି ନକହି ସେଠାରୁ ଦ୍ରୁତପଦରେ ଚାଲିଗଲେ। ଦୁର୍ଗାମଣି ଝିଅର ହାତ ଧରି ଗାଡ଼ିରେ ଯାଇ ବସିଲେ। ଗାଡ଼ିରେ ବସି ଜ୍ଞାନଦା ଅଚେତନପ୍ରାୟ ମାଆ କୋଳରେ ଶୋଇପଡ଼ିଲା।

## (ଚାରି)

ବିବାହର ବାରବର୍ଷ ପରେ ଦୁର୍ଗାମଣି ଆଜି ପୁଣି ବାପଘରକୁ ଆସିଛନ୍ତି। ଶରତ୍‌କାଳ– ମ୍ୟାଲେରିଆର ପ୍ରବଳ ପ୍ରାଦୁର୍ଭାବ ଗାଆଁ-ଗହଳରେ ସେତେବେଳେ। ଏଭଳି ଅସ୍ୱାସ୍ଥ୍ୟକର ସମୟରେ ଦୁର୍ଗାମଣି ବାପଘର ନିକଟରେ ପହଞ୍ଚିଗଲେ। ବଡ଼ଭାଇ ଶମ୍ଭୁନାଥ ଚାଟାର୍ଜୀ– ସେଦିନ ତାଙ୍କର ଜ୍ୱର ପାଳି। ତେଣୁ ସୂର୍ଯ୍ୟାସ୍ତ ପୂର୍ବରୁ ଖାଇପିଇ

Digitized by srujanika@gmail.com

ଶୋଇବାକୁ ଯାଉଥିବା ସମୟରେ ଭଉଣୀ ଆସିବା ଖବର ପାଇଲେ। ମୁଣ୍ଡ ଓ ଦେହରେ ଲୁଗା ଘୋଡ଼େଇ ହୋଇ ଖଡ଼ମ ପିନ୍ଧି ବାହାରକୁ ଆସିଲେ।

ଦୁର୍ଗାମଣିଙ୍କୁ ଦେଖି କହିଲେ, "ଆରେ ଭଉଣୀ, ଘର ଭିତରକୁ ଆସ।"

ଦୁର୍ଗାମଣି କାନ୍ଦି କାନ୍ଦି ଭାଇଙ୍କୁ ପ୍ରଣାମକଲେ।

ଜ୍ଞାନଦା ପ୍ରଣାମ କରୁ କରୁ ଶମ୍ଭୁନାଥ କହିଲେ, "ଏ ତୋର ଝିଅ ? ତାର ବିବାହ କେଉଁଠି କଲୁ ?"

ଦୁର୍ଗାମଣି କହିଲେ, "ନା ଭାଇ, ବିବାହ କରିପାରିନାହିଁ। ଯେଉଁଠି ହେଉ ପଛକେ ଏବର୍ଷ ଶୀଘ୍ର ..."

—"କ'ଣ କହିଲୁ ? ଝିଅର ବିଭାଘର ଆଜି ପର୍ଯ୍ୟନ୍ତ କରିନାହୁଁ ? ବଢ଼ିଲା ଝିଅ ..." ଅନେକ ଦିନ ହେଲା ଦେଖି ନଥିବାରୁ ଶମ୍ଭୁନାଥଙ୍କର ହୃଦୟ ସତେ ଯେପରି ଫାଟିପଡୁଥିଲା; କିନ୍ତୁ ତାହାକୁ ଚାପିରଖି ପୁଣି କହିଲେ, "ଏ ଅଞ୍ଚଳ ଲୋକେ ଭାରି ବଜ୍ଜାତ୍। ଭାଣିଜୀ ମୋର ଆସିଛି ଜାଣିଲେ ... ଛାଡ଼ ... ବଢ଼ିଲା ଝିଅ — ଠାକୁରଘରେ ହାଣ୍ଡିଶାଳରେ ତ ପଶିପାରିବନାହିଁ। ଆମ ବ୍ରାହ୍ମଣସମାଜ କଥା ତ ଜାଣିଛୁ। ତା'ପରେ ଏ ଆମ ଗାଁ ହରିପାଲ — ଏପରି ଖରାପ ସ୍ଥାନ ଯେ ଦୁନିଆ ଭିତରେ ଏମିତି ଆଉ ନଥିବ। ହଉ ହଉ, ଘର ଭିତରକୁ ଆସ। ଏତେ ବଡ଼ ଝିଅ। ତାକୁ ତାର କକାପାଖରେ ଛିଡ଼ାଦେଇ ଆସିଥିଲେ ତୁ ହୁଏତ ଦି'ଦିନ ବାପଘରେ ରହିପାରିଥାନ୍ତୁ। ତେବେ ... ହଉ ଛାଡ଼ — ଯା, ଗୋଡ଼ହାତ ଧୁଅ। ଆଗୋ ଶୁଣୁଛ ..." କହି କହି ଘର ଭିତରକୁ ଚାଲିଗଲେ। କିନ୍ତୁ ମାଆ ଝିଅ ? ଭାଇଙ୍କର ଏପରି କଥା ଶୁଣି ସେମାନଙ୍କ ଅନ୍ତର ଭିତରେ କୋହ ଉଠୁଥାଏ। ସେମାନେ କୌଣସି ପ୍ରକାରେ ଘର ଭିତରକୁ ଗଲେ।

ଶମ୍ଭୁନାଥଙ୍କର ଏ ଦ୍ୱିତୀୟ ପକ୍ଷର ସ୍ତ୍ରୀ। ଦୁର୍ଗାମଣି ବଡ଼ଭାଉଜଙ୍କୁ ଦେଖିଥିଲେ; ଏହାଙ୍କୁ ଦେଖିନଥିଲେ। ଦେଖିବାକୁ କଳା, ଡେଙ୍ଗୀ ଓ ରୁଗ୍ଣା। ମ୍ୟାଲେରିଆ ଜ୍ୱର ଭୋଗି ଭୋଗି ଦେହ ମୁହଁ କଳାକାଠ

Digitized by srujanika@gmail.com

ପଡ଼ିଯାଇଛି। ତିନିଦିନ ହେଲା ଗୁହାଳେ ଗୋବର ପଡ଼ିଥିଲା— ସେସବୁ ସଫାକରି ସଂଧ୍ୟା ଆସିଯିବାରୁ ଲଣ୍ଠନ ଲଗାଉଥିଲା। ସ୍ୱାମୀଙ୍କ ଡାକ ଶୁଣି ଆସି ଦୁର୍ଗାମଣିଙ୍କୁ ଦେଖି ଚିହ୍ନିପାରିଲାନାହିଁ। ସ୍ୱାମୀ ସଂକ୍ଷେପରେ ତା'ର ପରିଚୟ ଦେଇ ଘର ଭିତରକୁ ଚାଲିଗଲେ। ଭାଉଜର ଘର ମେଦିନୀପୁର— ନାଁ ଭାମିନୀ— କଥା ସବୁ ବଙ୍କା ବଙ୍କା। ପରିଚୟ ପାଇ ନଣନ୍ଦକୁ ରୋଷେଇଘରକୁ ଟାଣିନେଇ ବସିବାକୁ ପିଢ଼ା ଆଣିଦେଲା। ଭାଉଜର ଚାଲିଚଳନ ଦେଖି, କଥାବାର୍ତ୍ତା ଶୁଣି ଦୁର୍ଗାମଣିଙ୍କର ଛାତି ଭିତରଟା କମ୍ପିଉଠିଲା। ବାପଘରକୁ ଆସିଲାବେଳେ ଦୁର୍ଗାମଣି ରସଗୋଲା ଠେକିଏ ନେଇ ଯାଇଥିଲେ। ରସଗୋଲା ଦେଖୁ ଦେଖୁ ଭାଇଙ୍କର ପଙ୍ଗପାଳ ଭଳି ଦଳେ ପିଲା ଆସି ବୋଉଠାରୁ ଛଡ଼େଇ ସେସବୁ ଖାଇଦେଇ ପକାଇଲେ।

ଦୁର୍ଗାମଣି ଏଇ ଗାଆଁର ଝିଅ। ଗାଁର ଚାଲିଚଳନ ସବୁ ଜାଣନ୍ତି; କିନ୍ତୁ ଏ ଗାଁର ଆଠ-ଦଶ ବର୍ଷର ପୁଅ ଝିଅ ଲଙ୍ଗଳା ହେଉଥିବାର ଦେଖି ଜ୍ଞାନଦାର ମଥା ଲାଜରେ ତଳକୁ ହୋଇଗଲା। ଅତି ଅଶିକ୍ଷିତ ଏ ଗାଆଁ। ତାଙ୍କ ଗାଆଁ ଯଦିବା ସହର ନୁହେଁ, ତଥାପି ରାସ୍ତାଘାଟ ଅଛି। ଆମ୍ବ ପଣସ ଇତ୍ୟାଦି ଗଛ ଥିଲେ ମଧ ସ୍ଥାନ ଅନ୍ଧାରିଆ ନୁହେଁ। କିନ୍ତୁ ଏ ଗାଆଁର ଚାରିଆଡ଼େ ଗୋବରଖାତ; ପଚାଗନ୍ଧରେ ନାକ ଫାଟିପଡୁଚି। ସଂଧ୍ୟା ବେଶି ହୋଇଗଲେ ଡିହ ଉପରକୁ ଗୋଟିଏ ବିଲୁଆ ଆସିବାରୁ ବଡ଼ ପିଲାଟିଏ ଯାଇ ତାକୁ ତଡ଼ିଦେଲା। ଝିଙ୍କିକାର ଝିଁ ଝିଁ ଶବ୍ଦରେ କାନ ଫାଟିପଡୁଛି। ଘର ପାଖରେ ଥିବା ଗୋଟିଏ ଶୁଖିଲା ଗଛର ଡାଳରେ ଆଗରୁ ଶୁଣିନଥିବା ଏକ ବିକଟ ଶବ୍ଦ ଶୁଣି ଜ୍ଞାନଦା ଡରିଗଲା। ଏଇଟା କି ଶବ୍ଦ ବୋଲି ସେ ତାର ମାଈଁଙ୍କୁ ପଚାରିବାରୁ ମାଈଁ କହିଲେ, ''ହେ ସେ ହେଉଛି...''

ଜ୍ଞାନଦା ଡରିଡରି କହିଲା, ''କ'ଣ ? କ'ଣ ତକ୍ଷକ ସାପ...?''

ମାଈଁ କହିଲେ, ''ହଁ ତକ୍ଷକ ସାପ। ତକ୍ଷକ ପରା କୋଉ ରାଜାକୁ କାମୁଡ଼ିଥିଲା। ଆମ ଗାଁର ଗଛମାନଙ୍କରେ ସେମାନେ ଭରପୂର।

ସେ କଥା ଶୁଣି ଜ୍ଞାନଦା ମା'ପାଖକୁ ଯାଇ କହିଲା, ''ବୋଉ,

Digitized by srujanika@gmail.com

ଚାଲ ପଳେଇବା; ମୁଁ ଏଠାରେ ମୁହୂର୍ତ୍ତେ ମାତ୍ର ରହିପାରିବି ନାହିଁ।''
ମାଈଁ ଆଶ୍ଚର୍ଯ୍ୟ ହୋଇ କହିଲେ, ''ଭୟ କ'ଣ? ସାପମାନେ ପରା ଦେବତା— କେବେ କାହାର ଅପକାର କରନ୍ତି ନାହିଁ। ଆଉ ସାପ କାମୁଡ଼ାରେ କେହି ଲୋକ ମରିବାର କେବେ କ'ଣ ଶୁଣିଛ? ଏଠାରେ ସାପକାମୁଡ଼ାକୁ ଭୟ ନାହିଁ— ବରଂ ମ୍ୟାଲେରିଆକୁ ଭୟ। ଥରେ ଜରହେଲେ ସହଜରେ ଛାଡ଼େନାହିଁ। କୋଡ଼ିଏ ଦିନ ହେଲା ତୁମ ମାମୁଙ୍କ ପାଳିଜର ଧରିଛି ଯେ ତାଙ୍କୁ ଜରାଜୀର୍ଣ୍ଣ କରିପକାଇଲାଣି। ଆଉ କିଛି ଦିନ ପରେ ଏ ଗାଁର ସମସ୍ତେ ଜରରେ ପଡ଼ିଯିବେ। ମା'! କାହାରି ମୁହଁରେ ଟୋପେ ପାଣି ଦେବାକୁ କେହି ସୁସ୍ଥ ଲୋକ ନଥିବେ।''

ଅତୁଳର କଥା ମନେପକାଇ ଜ୍ଞାନଦା ସେ ରାତିରେ ମୋଟେ ଶୋଇପାରିଲାନାହିଁ। ମାଆ ପାଖରେ ଶୋଇଥିଲେ ବି ରାତିରେ ତାର ଚାଉଁ ଚାଉଁ ନିଦ ଭାଙ୍ଗିଯାଉଥାଏ। ଏମିତି ହୋଇ ରାତି ପାହିଗଲା। ନୂଆ ଜାଗାକୁ ଆସି ତାକୁ ମୋଟେ ଭଲ ଲାଗିଲା ନାହିଁ।

ଝିଅଟିକୁ ଦେଖି ଗାଆଁ ସାରା ଲୋକ ଆଶ୍ଚର୍ଯ୍ୟ ହୋଇଗଲେ। ବାପ-ମା' ଝିଅର ବୟସ କମ୍ କରି କହିଥାନ୍ତି। ଦୁର୍ଗାମଣି ଝିଅକୁ ଯେତେବେଳେ ତେର ବର୍ଷ କହନ୍ତି, ସେତେବେଳେ ତା'ର ବୟସ ପନ୍ଦର ବୋଲି ସମସ୍ତେ ଧରିନିଅନ୍ତି। ତା'ଛଡ଼ା ଗୋଟିଏ ବୋଲି ଝିଅ ହୋଇଥିବାରୁ ଦୁର୍ଗାମଣି ନିଜେ ଭଲ ନଖାଇ ଝିଅକୁ ଖାଇବାକୁ ଦେଇଥାନ୍ତି। ସେଥିଲାଗି ଝିଅଟି ସ୍ୱାସ୍ଥ୍ୟବତୀ— ପନ୍ଦର ବର୍ଷର ଝିଅ ହେଲେ ବି ମାଇପିଟିଏ ଭଳି ଦେଖାଯାଉଥାଏ।

ଦି'ଦିନ ନଯାଉଣୁ ଶମ୍ଭୁନାଥ ଭଉଣୀକୁ କହିଲେ, ''ଭାଣିଜୀ ଲାଗି ଗାଆଁରେ ମୁହଁ ଦେଖାଇପାରୁନାହିଁ। ଗୋଟିଏ ସୁପାତ୍ର ଅଛି, କ'ଣ ବାହା ଦେବୁ?''

ଦୁର୍ଗାମଣି କହିଲେ, ''ଜୋଇଁ ଠିକ୍ କରି ରଖିଛି— ଆଉ କୋଉଁଠି ବୁଝିବା ଦରକାର ନାହିଁ।''

—''ତେବେ ଆଉ କାହିଁକି ବୁଝିବି? କଥା କ'ଣ କି, ଏମିତିକା

Digitized by srujanika@gmail.com

ସୁପାତ୍ର ଭାଗ୍ୟରେ ଥିଲେ ମିଳେ। ଘରବାଡ଼ି, ପୋଖରୀ, ଧାନଗୋଲା ସବୁ ଅଛି। ତା'ପରେ କ୍ୱାଇଁ ଲେଖାପଢ଼ା ବି କରିଛି।''

—''ନାହିଁ ଭାଇ, ବୁଝିବା ଦରକାର ନାହିଁ। ଏଇ ବର୍ଷଟା ବିତିଗଲେ ଆରବର୍ଷକୁ ଝିଅକୁ ବିଭାକରିଦେବି।''

ଶମ୍ଭୁ କହିଲେ, ''ମୋ' ବିବେଚନାରେ ଏଇ ଆସନ୍ତା ମଗୁଶିର ମାସରେ ନିମିଉଟା ସାରିଦେବା ଭଲ।'' ଦୁର୍ଗାମଣି ଆଉ କିଛି ନକହି କାମ ବାହାନାରେ ଅନ୍ୟତ୍ର ଚାଲିଗଲେ। କିନ୍ତୁ କଥାଟା ଲୁଚି ରହିଲାନାହିଁ। ଶମ୍ଭୁନାଥଙ୍କର ସେହି ସୁପାତ୍ରଟି ହେଉଛି ତାଙ୍କର ଦ୍ୱିତୀୟ ପକ୍ଷର ସ୍ତ୍ରୀଙ୍କର ଭାଇ। ସେହି ସୁପାତ୍ରଟିର ସ୍ତ୍ରୀ ପ୍ରାୟ ଛଅ ମାସ ହେଲା ମରିଗଲେଣି। ଆଉ ବେଶିଦିନି ବିବାହ ନକରି ରହିବାକୁ ସେ ଚାହୁଁନାହିଁ। ବିଶେଷତଃ ତାର ଅନେକ ଛୋଟ ଛୋଟ ପିଲା ଥିବାରୁ ଜଣେ ବଡ଼ ଝିଅ ବିଭାହେବା ଅତି ଆବଶ୍ୟକ ହୋଇପଡ଼ିଛି।

ସେଥିଲାଗି ବାରମ୍ବାର ମନାକରିବା ସତ୍ତ୍ୱେ ସେହି ସୁପାତ୍ରଟି ଦିନେ ହଠାତ୍ ଭିଣୋଇଙ୍କ ଘରେ ପହଞ୍ଚି ଜ୍ଞାନଦାକୁ ଦେଖି ପସନ୍ଦ କରି ଫେରିଗଲା। କିନ୍ତୁ ଏ ପ୍ରସ୍ତାବରେ ଦୁର୍ଗାମଣି ଅସମ୍ମତି ପ୍ରକାଶ କରିବାରୁ ଶମ୍ଭୁନାଥ ରାଗିଯାଇ କହିଲେ, ''ମୋର ଭିଣୋଇ ପ୍ରିୟନାଥଙ୍କ ମୃତ୍ୟୁପରେ ମୁଁ ଜ୍ଞାନଦାର ପ୍ରକୃତ ଅଭିଭାବକ। ତେଣୁ ଆବଶ୍ୟକ ହେଲେ ଆସନ୍ତା ମାର୍ଗଶିର ମାସରେ ବଳପୂର୍ବକ ବିବାହ କରାଇଦେବି।''

ଭାଇଙ୍କ ସଙ୍ଗେ ଯୁକ୍ତିକରି ଘରଭିତରକୁ ଫେରିଆସି ଦୁର୍ଗାମଣି ଦେଖିଲେ ଝିଅ ତାଙ୍କର କାନ୍ଦୁଛି। କାନ୍ଦି କାନ୍ଦି ଆଖି ତାର ଫୁଲିଗଲାଣି। ମାମୁଙ୍କର ସବୁ କଥା ଯେ ଜ୍ଞାନଦା ଶୁଣିଛି, ଦୁର୍ଗାମଣି ତାହା ଜାଣିପାରିଲେ। ଝିଅକୁ କୋଳକୁ ଟାଣିଆଣି କହିଲେ, ''ମୁଁ ଥିବା ପର୍ଯ୍ୟନ୍ତ ତୋର ଭୟ କ'ଣ ?'' ଝିଅକୁ ସାନ୍ତ୍ୱନା ଦେବାକୁ ସିନା ଏପରି କହିଦେଲେ, ହେଲେ ଅନ୍ତର ଭିତରେ ଯେ ଅନେକ ଭୟ ଜମାଟ ବାନ୍ଧିଯାଉଛି, ସେକଥା ପ୍ରକାଶ କଲେନାହିଁ। ଏ ଅଞ୍ଚଳରେ ଜୋର୍-ଜବରଦସ୍ତି ଝିଅର ଅନିଚ୍ଛା ସତ୍ତ୍ୱେ ବିବାହ କରାଇଦିଅନ୍ତି— ଏକଥା ଦୁର୍ଗାମଣିଙ୍କୁ ବେଶ୍ ଜଣାଥିଲା। ସେ ଝିଅକୁ କୋଳକୁ ଟାଣିଆଣି ଚମକି ପଡ଼ି ପଚାରିଲେ,

Digitized by srujanika@gmail.com

"ମା ! ତତେ କେତେବେଳଠୁଁ ଜର ?"

—"କାଲି ରାତିରୁ ।" ଝିଅ ଉତ୍ତର ଦେଲା ।

—"ମୋତେ କାହିଁକି ଜଣାଇନୁ ? ଆଜିକାଲି ଯେ ଭୟାନକ ମ୍ୟାଲେରିଆ ଜର !" ଝିଅ କିଛି ନକହି ଚୁପ୍ ରହିଲା ।

ଭାଉଜ ସାଙ୍ଗରେ ଦୁର୍ଗାମଣିଙ୍କର ବେଶୀ ଘନିଷ୍ଠତା ନଥିଲା । ଭାଉଜ ଦେଖିବାକୁ ତ କୋଇଲି ଭଳି— କଣ୍ଠସ୍ୱର ଡାମରା କୁଆ— ଅତି କର୍କଶ । କଥା କହିଲେ ସତେ ଯେପରି ଝଗଡ଼ା କଲାଭଳି ମନେହୁଏ । ଅବଶ୍ୟ ଗାଁ-ଝିଅବୋହୂ ଟିକେ ବଡ଼ପାଟିରେ କଥାବାର୍ତ୍ତା କରନ୍ତି— ହେଲେ ଭାଉଜ ତାଙ୍କର କଥା କହିବସିଲେ ଝଗଡ଼ା କଲାଭଳି ମନେହୁଏ । ତା'ଛଡ଼ା ସେ ଭାରି ମୁଖରା । ଏସବୁ ସତ୍ତ୍ୱେ ତାଙ୍କର ଗୋଟିଏ ଭଲ ଗୁଣ ଥିଲା— ସେ ଉପରେପଡ଼ି କଳି କରେନାହିଁ; ନିଜ ଛୁଆପିଲା ସହିତ ସୁଖରେ ଥାଏ, ପରକଥାକୁ କାନଦିଏନା ।

ଦୁର୍ଗାମଣି ପ୍ରଥମେ ଆସି ଭାଉଜଙ୍କୁ ରୋଷେଇ କରିବାରେ ସାହାଯ୍ୟ କରିବାରୁ ଭାଉଜ କହନ୍ତି— ତୁମେ କୁଣିଆ ଲୋକ । ଦି'ଦିନ ପାଇଁ ଆମ ଘରକୁ ଆସିଛ— ତୁମେ କ'ଣ ରୋଷେଇ କରିବ ? ସେଇଦିନଠୁଁ ଦୁର୍ଗାମଣି ଆଉ ସେ କାମ କରନ୍ତିନାହିଁ ।

ଆଜି ଟିକିଏ ଦିନ ଗଡ଼ିଯିବାରୁ ଭାଉଜ ପାଟିକରି କହିଲେ, "ଆଗୋ ଦୁର୍ଗାମଣି— ଆଜି କ'ଣ ଖାଇବନିକି ? ଝିଅକୁ ଧରି ସେମିତି ଘରେ ବସିଥିବ ନା କ'ଣ ?"

ଦୁର୍ଗାମଣି କହିଲେ, "ଝିଅକୁ ଭାରି ଜର । ଆମେ ଆଜି କିଛି ଖାଇବୁନି— ତୁମେ ଖାଅ ।"

—"ଝିଅକୁ ସିନା ଜର— ହେଲେ ତୁମର କ'ଣ ହେଲା ? ଜର କ'ଣ ଆଉ କାହାକୁ ହୁଏନା ? ଯାଅ ! ଗାଧୁଆ ପାଧୁଆ କରି ଆସ— ଖାଇବ ।"

—"ନା ଭାଉଜ ! ଝିଅ ନଖାଇଲେ ମତେ ଖାଇବାକୁ ଭଲ ଲାଗେନାହିଁ ।"

"ଝିଅ-ସୁହାଗ ରଖ, ଖାଇବ ଆସ ।" —କହି ସେ ଚାଲିଗଲେ ।

Digitized by srujanika@gmail.com

ରୋଷେଇଘରେ ଥାଇ ବରବର ହେଉଥାନ୍ତି – "ଜର ତ ହୋଇଛି; କବିରାଜ ଡାକି ଔଷଧ ଖୁଆଅ। ମ୍ୟାଲେରିଆ ଜରରେ କିଏ ଉପାସ ରହେ ? ଆମର ଏଠି ଏସବୁ କଥା ଚଳେନା।"

ଉପରବେଳା ସେ ଗିନାଏ କବିରାଜୀ ପାଚନ ଆଣି କହିଲେ, "ଆରେ ମା ଜ୍ଞାନଦା, ଉଠ, ଔଷଧ ଖାଆ। ଭାତରେ ପାଣିଦେଇ ରଖିଚି, ଖାଇବୁ ଚାଲ।"

ଜ୍ଞାନଦା ତା' ମାଈଁଙ୍କୁ ଭାରି ଭୟକରେ। ତେଣୁ ଡରି ଡରି ସିଦ୍ଧ ପିତା ପାଚନ ଔଷଧ ପିଇଦେଲା। ସଙ୍ଗେ ସଙ୍ଗେ ତାର ବାନ୍ତି ହୋଇଗଲା। ବାନ୍ତି ଶବ୍ଦ ଶୁଣି ଦୁର୍ଗାମଣି ଧାଇଁଆସିଲେ। ମାଈଁ ବାହାରକୁ ଯାଇ ବଡ଼ପାଟିରେ ସାଇପଡ଼ିଶାଙ୍କୁ ଶୁଣାଇ କହିଲେ, "ତମେମାନେ ଛୁଆପିଲାଧରି କାହିଁକି ଏ ଗରିବ ଘରକୁ ଆସ, କହିଲ ?"

ସେହିଦିନୁ ଜ୍ଞାନଦାର ଦେହ ବେଶୀ ଖରାପ ହେବାକୁ ଲାଗିଲା। ସେଦିନର ମାଈଁ କଥା ତାର ମନେପଡୁଥାଏ – ମଫସଲ ଅଞ୍ଚଳରେସାପ ବିଛା କାମୁଡ଼ାରେ ଲୋକ ମରନ୍ତିନାହିଁ– ମ୍ୟାଲେରିଆ ମରଣଭୟ– ଥରେ ଯଦି ମ୍ୟାଲେରିଆ ଧରିଛି, ତେବେ ଛାଡ଼ିବା ମୁସ୍କିଲ। ସେଇ କଥା ମନେପଡ଼ିବାରୁ ଜ୍ଞାନଦା ଭୟକରିଗଲା। ଦିନକୁ ଦିନ ସେ ଶଯ୍ୟାଗତ ହେବାକୁ ଲାଗିଲା। ସେଦିନ ଥିଲା କାର୍ତ୍ତିକ ମାସ ସଂକ୍ରାନ୍ତି। ଦୁର୍ଗାମଣି ଘରେ ଆସି ଦେଖିଲେ, ଭାଉଜ ଝିଅ ପାଖରେ ବସି ତାର ମୁଣ୍ଡ ଆଉଁସି ଦେଉଛି। ପିଲାଛୁଆ ସଂସାରରେ ତାର ତ ବସିବାକୁ ମୋଟେ ତର ନଥାଏ – ସେଥିରେ ପରଝିଅର ସେବା କରିବା ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ। ନିଜ ଭାଇର ବିବାହ ସମ୍ବନ୍ଧରେ ଭାଉଜଙ୍କର ଯେ ଗୋପନ ହାତ ଅଛି, ଏକଥା ବୁଝିବାକୁ ଦୁର୍ଗାମଣିଙ୍କର ଆଉ ବାକି ରହିଲାନାହିଁ।

ଭାଉଜ ଗଳାଝାଡ଼ି କହିଲେ, "ତାରକେଶ୍ୱରରେ ଜଣେ ଡାକ୍ତର ଅଛନ୍ତି। ତାଙ୍କୁ ଆଣିବାକୁ ତମ ଭାଇଙ୍କୁ ପଠାଇଛି। ଜ୍ୱର ତ ଦିନକୁ ବଢୁଚି। ଏ ଭଲ ଲକ୍ଷଣ ନୁହେଁ।" –ଏହା କହି ନିଜ କାମରେ ସେ ଚାଲିଗଲେ।

Digitized by srujanika@gmail.com

ମାଙ୍କ ଚାଲିଯିବାପରେ ଜ୍ଞାନଦା ତକିଆତଳୁ ଚିଠି ଗୋଟିଏ ବାହାରକରି କହିଲା, "ଅତୁଳ ଭାଇ ଚିଠି ଦେଇଚ୍ଛନ୍ତି ବୋଉ !"

—"କାହିଁ ଦେଖେ" —କହି ଚିଠିଟି ଆଗ୍ରହରେ ଆଣିଲେ ସତ; କିନ୍ତୁ ପଢ଼ିବାକୁ ସାହସ ହେଲାନାହିଁ। ମନ ହେଲା ଖୋଲି ପଢ଼ିବାକୁ, କିନ୍ତୁ ଖୋଲିପାରିଲେନାହିଁ। ମନଖୁସିରେ କହିଲେ, "କ'ଣ ଲେଖିଛି ବାବା ଅତୁଳ ?"

ଜ୍ଞାନଦା କଡ଼ ଲେଉଟାଇ କହିଲା, "ଆମର ଏଠାକୁ ଆସିବାଟା ଠିକ୍ ହୋଇନାହିଁ ବୋଲି ଲେଖିଛନ୍ତି।" ଏକଥା ଶୁଣି ଦୁର୍ଗାମଣିଙ୍କ ଆଖିରେ ଲୁହ ଜକେଇ ଆସିଲା। ମନେ ମନେ ସେ କହିବାକୁ ଲାଗିଲେ— ଅତୁଳ ଲେଖିଛି— ଆସିବାଟା ଠିକ୍ ହେଲାନାହିଁ। ଏଇ କେଇପଦ କଥା ମାଧ୍ୟମରେ ତା'ର କେତେ ଅଭିମାନ ଭରି ରହିଛି। ଝିଅ ମୋର ଏଠାକୁ ଆସି ଜରରେ ପଡ଼ିଛି। ଆମକୁ ସେଦିନ ଦେଖିବାଲାଗି ପାଠପଢ଼ା ଛାଡ଼ି କଲିକତାରୁ ଧାଇଁଆସିଥିଲା। ସେଥିରେ ତା' ମାଉସୀ ସାଙ୍ଗରେ ଆମ ଲାଗି କେତେ କଳି। ଆମ ଲାଗି କଲିକତାରୁ ସେ ଆସିଛି— ଏକଥା ତା' ମାଆ ଜାଣିଲେ, ପାଇପଡ଼ିଶା ବନ୍ଧୁବାନ୍ଧବ ଜାଣିଲେ। ମୁଁ ଯୁଆଡ଼େ ଗଲେ କିଛି କ୍ଷତି ନାହିଁ— ଝିଅଟାକୁ ସାଙ୍ଗରେ ଆଣିବା ଠିକ୍ ହେଲାନାହିଁ। ଚିଠିଟି ଓଲଟପାଲଟ କରୁ କରୁ ତାଙ୍କର ଆଖି ଆଗରେ ଅତୁଳର ସୌମ୍ୟରୂପ ନାଚିଗଲା— ସ୍ୱାମୀଙ୍କ ମୃତ୍ୟୁଶଯ୍ୟାରେ ଅତୁଳର ପ୍ରତିଜ୍ଞା— ପୁରୀରୁ ଫେରି ମହାପ୍ରସାଦ ଦେବା ଆଳରେ ଜ୍ଞାନଦାକୁ କାଚ ଉପହାର ଦେବା— ସବୁ କଥା ମନେପଡ଼ିଗଲା। ସେ ପ୍ରକୃତିସ୍ଥ ହୋଇ ଡାକିଲେ, "ମା ! ଦେହ କେମିତି ଲାଗୁଛି ?"

—"ଭଲଲାଗୁଛି ମା' !"

—"ପଢୁନୁ ବୋଉ— ସବୁ ଜାଣିବୁ।"

କୌତୂହଳରେ ଦୁର୍ଗାମଣି ଚିଠିଟି ନେଇ ଖୋଲିଲେ। ଦେଖିଲେ, ଏତେ ବଡ଼ କାଗଜରେ ମାତ୍ର କେଇପଦ ଲେଖା। ଝିଅ କେଉଁ ଚିଠି ଦେଲା କି ? କିନ୍ତୁ 'ଶ୍ରୀଚରଣେଷୁ' ପଢ଼ି ଜାଣିଲେ ଚିଠିଟି

Digitized by srujanika@gmail.com

ତାଙ୍କରି ଉଦ୍ଦେଶ୍ୟରେ ଲେଖା। ଚିଠିରେ ଲେଖାଥିଲା– ପ୍ରଥମରୁ କହିଥିଲି ହରିପାଲ ମ୍ୟାଲେରିଆ ଜାଗା। ଜ୍ଞାନଦା ମ୍ୟାଲେରିଆରେ ପଡ଼ିଥିବାର ଶୁଣି ଦୁଃଖିତ ହେଲି। ଆଶା କରୁଛି ଶୀଘ୍ର ଭଲହୋଇଯିବ। ମୁଁ ଭଲ ଅଛି। ମୋର ପ୍ରଣାମ ଗ୍ରହଣ କରିବେ। ଇତି।

ସ୍ତ୍ରୀଲୋକ ହିସାବରେ କଥାଟା ପଚାରିବାକୁ ମନ ନହେଲେ ବି ମାଆ ହିସାବରେ ପଚାରିବାକୁ ଖୁବ୍ ଆଗ୍ରହ ହେଲା। ଝିଅ ପାଖରେ ବସିପଡ଼ି ସ୍ନେହରେ ପଚାରିଲେ, "ତୋର ଚିଠି ପାଇ ଅତୁଳ ବିରକ୍ତି ପ୍ରକାଶ କରିଚି କି?"

ଜ୍ଞାନଦା କହିଲା, "ମୋ' ଚିଠି କାହିଁ? ମୋ ପାଖକୁ ତ ଚିଠି ଲେଖିନାହାନ୍ତି– ତୁମକୁ ଲେଖିଛନ୍ତି।"

ଦୁର୍ଗାମଣି ହସିଦେଇ କହିଲେ, "ତୋ' ଚିଠି ପଢ଼ିବାକୁ ମୁଁ ଚାହୁଁନି। ସେ ତୋ' ପାଖକୁ ଚିଠି ଦେଇଥିବା କଥା ଶୁଣିଲେ ଖୁସି ଲାଗିବ। ସେ ଯେ ତୋ' ଉପରେ ରାଗ କରିଚି ମୁଁ ବୁଝିପାରୁଚି।"

–"ନା ମା'! ମୋ ପାଖକୁ ଅଲଗା କିଛି ଚିଠି ଲେଖିନାହାନ୍ତି। ତୋ'ରି ଚିଠିରେ ଯାହାସବୁ ଲେଖିଛନ୍ତି।" –ଏହା କହି ସେ କଡ଼ ଲେଉଟାଇ ଶୋଇଲା।

–"ସବୁ ଏତିକି? ଆଉ କିଛି ଲେଖିନି?" –ଏହା କହି ଦୁର୍ଗାମଣି ନୀରବ ହୋଇଗଲେ। ତାଙ୍କ ହାତର ଆଙ୍ଗୁଳିଗୁଡ଼ିକ ସତେ ଯେପରି ପଥରପରି ଶକ୍ତ ହୋଇଗଲା। କିଛି ସମୟ ବସିରହି ତା'ପରେ ଧୀରେ ଧୀରେ ଉଠି ଚାଲିଗଲେ।

## (ପାଞ୍ଚ)

ମାର୍ଗଶିର ମାସ। ଶୀତୁଳିଆ ଉତ୍ତରା ପବନ ବହୁଥାଏ। ଦୁର୍ଗାମଣିଙ୍କର ପିଲାଦିନର ସାଙ୍ଗ ତା' ଶାଶୁଘରୁ ବାପଘରକୁ ଆସିଥାଏ। ଝିଅ ଦେହ ଆଜି ଟିକିଏ ଭଲ ଥିବାରୁ ସେ ସାଙ୍ଗକୁ ଦେଖିବାକୁ ତାଙ୍କ ଘରକୁ ଯାଉଥାନ୍ତି। ବାଟରେ ଡାକପିଅନ ଦାଣ୍ଡୁ ସହ ଦେଖାହେଲା।

Digitized by srujanika@gmail.com

ସେ କହିଲେ, "ଆରେ ଦାଶୁ, ମୋ ଚିଠିପତ୍ର କିଛି ଆସୁନି ନା କ'ଣ? ମୁଁ ତ କିଛି ପାଉନାହିଁ।"

ଦାଶୁ ହସି ହସି କହିଲା, "ଚିଠି ଆସିଲେ ସିନା ମୁଁ ଦେବି– ନହେଲେ କେଉଁଠୁ ଦେବି?"

ଦୁର୍ଗାମଣି କହିଲେ, "ନା ଦାଶୁ, ତୋ' ବେଗ୍‌ଟା ଭଲକରି ଟିକେ ଦେଖିଲୁ– କେଉଁଠି ଭିତରେ ରହିଯାଇଥିବ। ତିନି ତିନି ଖଣ୍ଡ ଚିଠିର ଉତ୍ତର କେମିତି ସେ ଦେବନାହିଁ! ଅତୁଳ ତ ସେମିତିକା ପିଲା ନୁହେଁ।"

–"ଚିଠି ଆସିଲେ ନିଶ୍ଚୟ ଦେବି।" –ଏହା କହି ଦାଶୁ ଯିବାକୁ ଉଦ୍ୟତ ହେବାରୁ ଦୁର୍ଗାମଣି ବାଧା ଦେଇ କହିଲେ, "ଏମିତି ଭୁଲରେ ଚିଠିଟା ହୁଏତ ଟେବୁଲ ଉପରେ ହେଉ ବା ଡ୍ରୟାର୍ ଭିତରେ ରହିଯାଇଥାଇପାରେ। ପୋଷ୍ଟମାଷ୍ଟର ତ ମୋତେ ଭଲ ଚିହ୍ନେନା– ଏଠି ସମସ୍ତେ ଚିହ୍ନନ୍ତି। ମୁଁ ନିଜେ ଯାଇ ଖୋଜାଖୋଜି କରିବି କି?

ଦୁର୍ଗାମଣିଙ୍କର ବ୍ୟାକୁଳତା ଦେଖି ଦାଶୁ କହିଲା, "ତମେ କାହିଁକି ଯିବ? ମୁଁ ଆଜି ନିଜେ ଖୋଜି ଦେଖିବି। ଯଦି ପାଏ ଆଣି ଦେଇଯିବି।" –ଏହା କହି ସେ ତା' ବାଟରେ ଚାଲିଗଲା।

–"ହେ ମା' ଦୁର୍ଗା। ତୁ ଭରସା। ଯେମିତି ଚିଠି ମିଳିଯାଏ। ଝିଅଟାର ଅସୁସ୍ଥତା ଖବର ଶୁଣି ଅତୁଳ କ'ଣ ଚିଠି ଦେଇନଥିବ? ନିଶ୍ଚୟ ଦେଇଥିବ; କିନ୍ତୁ କେଉଁଠି ରହିଯାଇଛି।" ଦୀର୍ଘଶ୍ୱାସ ଛାଡ଼ି ଦୁର୍ଗାମଣି କହିଲେ।

ହାୟରେ ମଣିଷର ଆଶା! କ'ଣ ସେ ଆଶା କରିନପାରେ? ଦୁର୍ଗାମଣି ଭାବିପାରିଲେ ନାହିଁ ଯେ ହୁଏତ ଏହା ଭିତରେ ଅତୁଳର ମନୋଭାବ ପରିବର୍ତ୍ତନ ହୋଇଯାଇଥାଇପାରେ।

ଘରକୁ ଫେରି ଦୁର୍ଗାମଣି ପଚାରିଲେ, "ଆରେ ମା'! ଡାକପିଅନ କ'ଣ ଚିଠି ଦେଇଯାଇଛି କି?"

–"ନା ତ! ଦେଇନାହାନ୍ତି।"

"ଆଜିକୁ ଦୁଇମାସ ହେଲା ଆମର ତିନି ଖଣ୍ଡ ଚିଠିର ଉତ୍ତର

Digitized by srujanika@gmail.com

ଆସିନାହିଁ।'' ଦୁର୍ଗାମଣି ବ୍ୟାକୁଳ ହୋଇ କହିଲେ, ''ହୁଏତ ଡାକପିଅନ ଆସିଥିଲାବେଳେ ତୁ ଶୋଇପଡ଼ିଥିବୁ। ତୁ କ'ଣ ଟିକେ ଚେଇଁରହିଲେ ହୋଇନଥାନ୍ତା ?'' – ଏହା କହି ଝିଅ ଉପରେ ରାଗି ସେଠାରୁ ଚାଲିଗଲେ।

ମା' ସଙ୍ଗେ ବୃଥା ତର୍କ କରିବାକୁ ଜ୍ଞାନଦା ଉଚିତ ମନେକଲାନାହିଁ। ପ୍ରତିଦିନ ସେହି ଗୋଟିଏ ପ୍ରଶ୍ନର କେତେ ଉତ୍ତର ଦେବ ? ଲଜ୍ଜାରେ ତା' ମୁଣ୍ଡ ତଳକୁ ହୋଇଯାଉଥାଏ।

ଦୁର୍ଗାମଣି ସଙ୍ଗେ ସଙ୍ଗେ ଫେରିଆସି କହିଲେ, ''ଡାକପିଅନ କେମିତି ମୋତେ କହିଲା ଯେ, ଚିଠିପତ୍ର ଥିଲେ ଖୋଜି ଆଣି ଦେଇଯିବି !'' ତା'ର ଆଜି କେମିତି ବିଶ୍ୱାସ ହେଲା ଯେ, ଅତୁଳର ଚିଠି ଆସିଛି ବୋଲି।

ଜ୍ଞାନଦା କିଛି ନକହି ଚୁପ୍ ରହିଲା। ଏତିକିରେ ଦୁର୍ଗାମଣି ସ୍ଥିର ରହିଲେନାହିଁ। ବଡ଼ଭାଇଙ୍କ ପୁଅକୁ ପୋଷ୍ଟଅଫିସ୍‌କୁ ପଠାଇ ଜାଣିଲେ ଯେ ଦାଶୁ ସେପର୍ଯ୍ୟନ୍ତ ପୋଷ୍ଟ ଅଫିସକୁ ଆସିନାହିଁ।

ଅନେକ ଦିନ ଅପେକ୍ଷା କଲେ ବି ଅତୁଳ ନିକଟରୁ ଖଣ୍ଡିଏ ହେଲେ ଚିଠି ଆସିଲାନାହିଁ। ଶେଷରେ ହତାଶ ହୋଇ ସେ ଅତୁଳର ମା'ପାଖକୁ ଚିଠି ଲେଖିଲେ। ଉତ୍ତର ଆସିଲା – ଅତୁଳ ଭଲ ଅଛି। କଲିକତାରେ ରହି ପଢ଼ାପଢ଼ି କରୁଚି। ଚିଠିରେ ମଧ୍ୟ ଦୁର୍ଗାମଣିଙ୍କ ପ୍ରତି ତାଚ୍ଛଲ୍ୟ କଟୂକ୍ତି ଭାଷା ଥିଲାପରି ଲାଗିଲା। ଏମିତି ମାର୍ଗଶିର ଯାଇ ପୌଷ ଆସି ହେଲା; ତଥାପି ଚିଠିପତ୍ର ଆସିଲାନାହିଁ। ମାଘ ମାସ ବେଳକୁ ଝିଅ ଟିକିଏ ଭଲ ହେବାରୁ ମାଆ ଜ୍ୱରରେ ପଡ଼ିଲେ। ଜ୍ୱର ହେବାର କାରଣ, ସେ ଏତେ ବଡ଼ ଦୁଃଖ ସହିପାରିଲେନାହିଁ। ଭାଉଜଙ୍କ ପ୍ରତି ମଧ୍ୟ ତାଙ୍କର କମ୍ ବିଦ୍ୱେଷ ନଥିଲା। ଭାଉଜ କଥା ପଡ଼ିଲେ ସେ ଘୃଣାରେ ନାକ ଟେକନ୍ତି ବା 'ପୋଡ଼ାକାଠ' ବି କହିପକାନ୍ତି। ଭାଉଜ ଯେ କାହିଁକି ଜ୍ଞାନଦାକୁ ଏତେ ଆଦର କରୁଛନ୍ତି, ତାର କାରଣ ମଧ୍ୟ ଅଛପା ନାହିଁ। ଏସବୁ ନେଇ ଚିନ୍ତାରେ ଦୁର୍ଗାମଣି ଭୀଷଣ ଅସୁସ୍ଥ ହୋଇପଡ଼ିଲେ। ଜ୍ଞାନଦା କାନ୍ଦି କାନ୍ଦି କହିଲା, ''ଆଉ ଏଠି ରହିବା ଦରକାର ନାହିଁ ମା' ! ଯାହା ହେବାର କଥା,

Digitized by srujanika@gmail.com

ଆମ ଘରେ ହେଉ। ଚାଲ, ଆମେ ଘରକୁ ଚାଲିଯିବା।"

ଭାଉଜଙ୍କ ଆତ୍ମୀୟତା ଓ ଆଦରରୁ କିପରି ରକ୍ଷା ମିଳିବ, ସେକଥା ଦୁର୍ଗାମଣି ଭାବୁଥିଲେ। ତେଣୁ ସେ ରାଜିହୋଇଗଲେ।

ଘରକୁ ଯିବାପାଇଁ ପ୍ରସ୍ତୁତ ହେଉଥିବାର କଥା ଜାଣିପାରି ଶମ୍ଭୁନାଥ ଅଡ଼ିବସିଲେ। ସକାଳ ସାତଟା ସମୟ – ଶମ୍ଭୁନାଥ ପୂଜାପାଠ ଶେଷକରି ମାଡ଼ିଆସି ଡାକିଲେ, "ଦୁର୍ଗା !"

ଦୁର୍ଗାମଣି ସେତେବେଳେ ମୁହଁ ଧୋଉଥିଲେ। ଜ୍ଞାନଦା ତାଙ୍କୁ ସାହାଯ୍ୟ କରୁଥିଲା। ଦୁର୍ଗାମଣି କହିଲେ, 'ମୋତେ ଡାକୁଛ ଭାଇ ?"

ଶମ୍ଭୁ କହିଲେ, "ତୁ ତ ଏବେ ଯାଇପାରିବୁନାହିଁ।"

– "କାହିଁକି ?"

– "କାହିଁକି କ'ଣ ? ତୋ' ଲାଗି ମୁଁ କଥା ଦେଇ କ'ଣ ମିଥ୍ୟାବାଦୀ ହେବି ? ମୁଁ ସେମିତିକା ଲୋକ ନୁହେଁ।

କଥାଟା ନଜାଣିଲେ ବି ଦୁର୍ଗାମଣିର ଛାତି ଭିତରଟା ଭୟରେ କମ୍ପିଗଲା। ତେବେ ମୃଦୁକଣ୍ଠରେ କହିଲେ, "କାହା କଥା କହୁଛ ?"

– "ଭାଣିଜୀର ବିଭାଘର କଥା। ମୁଁ ତ ତାକୁ ଆଉ ବେଶୀ ଦିନ ରଖିପାରିବିନାହିଁ– ସେଥିପାଇଁ ମୋ' ଶଳା ନବୀନ ସାଙ୍ଗରେ ଆସନ୍ତା ଫଗୁଣ ମାସରେ ପାଞ୍ଚଦିନ ତିଥିରେ ବିବାହ କରିବାକୁ କଥା ପକ୍କା କରିଦେଲି। ଭାଣିଜୀକୁ ମୋର ଭଲ ଗହଣାଗାଣ୍ଠି ଦେବ। ସବୁଦିଗରୁ ଝିଅ ତୋର ସୁଖରେ ରହିବ।"

ଏକଥା ଶୁଣି ଦୁର୍ଗାମଣି ମୁଣ୍ଡରେ ବଜ୍ର ପଡ଼ିଲାପରି ବୋଧକଲେ। ସେ କାନ୍ଦି କାନ୍ଦି କହିଲେ, "ମୋତେ ଥରେ ନପଚାରି କିପରି କଥା ଦେଇଦେଲ ? ଏ ବିବାହ କେବେହେଲେ ଜୀବନ ଥିବା ପର୍ଯ୍ୟନ୍ତ କରାଇଦେବିନାହିଁ।"

– "କରାଇ ଦେବୁନାହିଁ କହିଲେ କ'ଣ ହେବ ? ମୁଁ ତାର ମାମୁ, ଅଭିଭାବକ। ମୁଁ ଯାହା କହିବି, ସେଇଆ ହେବ। ମୁଁ କଥା ଏପଟ ସେପଟ କରିବା ଲୋକ ନୁହେଁ।"

ଭାଇଙ୍କର ଦମ୍ଭୋକ୍ତି ଶୁଣି ଦୁର୍ଗାମଣି କହିଲେ, "ମୁଁ ମରିଗଲେ

Digitized by srujanika@gmail.com

ସୁଦ୍ଧା ମୋ' ଝିଅକୁ ଏଠାରେ ବାହା ଦେବିନାହିଁ। ମୋ ପାଇଁ ତୁମେ ଟିକେ ଚିନ୍ତାକରିବନି।'' —କହୁ କହୁ ତାଙ୍କର କଣ୍ଠ ରୁଦ୍ଧ ହୋଇଗଲା—ସେ କାନ୍ଦିଉଠିଲେ।

ଦୁର୍ଗାମଣିଙ୍କୁ ଏପରି କାନ୍ଦିବା ଦେଖି ଶମ୍ଭୁନାଥ ଭୟଙ୍କର ଚିଡ଼ିଉଠି କହିଲେ, ''ଶୁଭକାମରେ ଏପରି ସକେଇ କାନ୍ଦିବା ଠିକ୍ ନୁହେଁ। ଯେଉଁ କଥା ହେବା ସମ୍ଭବ ନୁହେଁ ମୁଁ ତାହା ଆଉ ପାରିବି ନାହିଁ।''

ଏହି ସମୟରେ ଶମ୍ଭୁନାଥଙ୍କର ସ୍ତ୍ରୀ ଭାମିନୀ ସେଠାରେ ଆସି ପହଞ୍ଚିଲା। ଦୁଇ ହାତରେ ଗୋବର ଲାଗିଛି—ବୋଧହୁଏ ଗୁହାଳ ସଫା କରୁଥିଲା। ସେ ସ୍ୱାମୀଙ୍କୁ ଉଦ୍ଦେଶ୍ୟ କରି କହିଲା, ''ଆଚ୍ଛା, ତୁମର ସେହି ସୁପାତ୍ରଟିଏ କିଏ କହିଲ, ଶୁଣେ ?''

ସ୍ତ୍ରୀର ଏପରି ଆକସ୍ମିକ ପ୍ରତିରୋଧରେ ଶମ୍ଭୁନାଥ ଆଶ୍ଚର୍ଯ୍ୟ ହୋଇଗଲେ। ସେ ଦମ୍ଭ ଧରି କହିଲେ, ''ସେ ଯେ କେହି ହେଉ; ତୁମର କ'ଣ ଗଲା ସେଥିରେ ?''

ଏତିକିରେ ଆଉ କ'ଣ ରକ୍ଷା ଅଛି ? ସେ ଅଣ୍ଟାରେ ଲୁଗାକାନି ଭିଡ଼ି ଏତେ ବଡ଼ପାଟି କରି କହିଲା ଯେ ସାରା ଗାଁଟା ଚମକି ଉଠିଲା, ''ମାମୁପଣିଆ ଦେଖାଉଛ ? ନବୀନ ସଙ୍ଗରେ ଭାଣିଜୀକୁ ବିବାହ କରାଇବ—ନା ! ତା'ହେଲେ ଏକଶହଟଙ୍କା ଅସଲସୁଧ ପରିଶୋଧ ହେଉଛି—ନା ? ଏଇଥିପାଇଁ ନବୀନ ଆମର ସୁପାତ୍ର ? ସେ ତ ମୋ' ନିଜ ଭାଇ—ମୁଁ କ'ଣ ସେଇଟାକୁ ଚିହ୍ନିନି ? ମଦ ଗଞ୍ଜେଇ ଖାଇ ପାଞ୍ଚଟି ପୁଅର ମାଆକୁ ପୁଣି ଆଠ ମାସ ଗର୍ଭଧରିଥିବାବେଳେ ତାକୁ ଗୋଇଠା ମାରି ମାରିପକାଇଲା। ଆ-ହା-ହା ! ତା'ଭଳି ଆଉ ସୁପାତ୍ର କାହିଁ ? ଦଉଡ଼ି ଲଗାଇ ମରିବାକୁ ରସି ଖଣ୍ଡେ ତୁମକୁ ମିଳୁନି ? ତୁମ ମୁରବିପଣିଆକୁ ଧିକ୍ !''

ଭଉଣୀ ଭାଣିଜୀ ଆଗରେ ନିଜର ଅପମାନ ଶମ୍ଭୁନାଥ ସହିପାରିଲେନାହିଁ। ଗୋଡ଼ରୁ ଖଡ଼ମ କାଢ଼ି ହାତରେ ଧରି ବଡ଼ପାଟିରେ କହିଲେ, ''ଚୁପ୍‌କର ହାରାମଜାଦୀ।''

ଏତିକିରେ ଭାମିନୀ ରାଗିଗଲା— ''କ'ଣ କହିଲ, ମୁଁ

Digitized by srujanika@gmail.com

ହାରାମଜାଦୀ ? ଆଉ ଥରେ ଯଦି ଏପରି କହିବ, ତେବେ ମୁହଁରେ ପୋଡ଼ାକାଠ ଯଦି ଗୁଞ୍ଜି ନେଇଛି, ମୁଁ ପଞ୍ଚୁ ଘୋଷାଲର ଝିଅ ନୁହେଁ। କାହିଁକି ଜୋର୍‌କରି ମୋର ଭାଣିଜୀର ବାହା କରାଇଦେବ ? କିଏ ତୁମେ କି ? ନଣନ୍ଦ ମୋର ବାପଘର ବୁଲିବାକୁ ଦି'ଦିନ ପାଇଁ ଆସିଚନ୍ତି– ତାଙ୍କୁ କାହିଁକି ତୁମେ ଦିନରାତି ଧମକାଉଚ ? ଏ ମାଇକଟା ପନିକିକୁ ଦେଖିଥାଅ ! ଶଳା-ଭିଣୋଇଙ୍କର ଯଦି ଏକାସାଙ୍ଗରେ ନାକ କାନ ନକାଟିଛି ତେବେ ମୋ ନାଁ ଭାମିନୀ ନୁହେଁ !''

ଶମ୍ଭୁନାଥ ଆଉ କିଛି ନକହି ଘରଭିତରକୁ ଚାଲିଗଲେ।

ସ୍ୱାମୀ ଚାଲିଯିବାରୁ ଭାମିନୀ ନଣନ୍ଦକୁ କହିଲା, ''ଭାଇକୁ ତୁମର ମୋଟେ ଚିହ୍ନିନା– ଭାରି ବଦମାସ। କୌଣସି ପ୍ରକାରେ ଏଭଳି ସୁନା ପ୍ରତିମାକୁ ଗୋଟାଏ ପୋଡ଼ାମୁହାଁ ବାନ୍ଦର ହାତରେ ଦେବ, ଆଉ ତା'ଠାରୁ ଟଙ୍କା ଆଣି କରଜ ଶୁଝିଦେଇ ଜମି ମୁକୁଳାଇବ, ସେହି ଉପାୟ ଦିନରାତି କରୁଥିଲେ। ଲୋକର ବୁଦ୍ଧି ଦେଖ– ସେଥିରେ ପୁଣି କହୁଛନ୍ତି– ମୁଁ ତା'ର ମାମୁ, ଆଉ ମୁରବି . . . ଛି।''

ଟିକିଏ ରହି ପୁଣି କହିଲା, ''ଶୁଣିଲେ ତୁମେ ଦୁଃଖ କରିବ। ମୁଁ ତାଙ୍କୁ କହିଲି– ଝିଅଟାକୁ ଜର ହେଉଚି– ଗୋଟିଏ ଭଲ ଡାକ୍ତର ଡାକିଆଣି ଔଷଧପତ୍ର ଦିଅ। ମୋ କଥାକୁ କାନ ଦେଲେ ନାହିଁ। ମୁଁ ବଞ୍ଚିଥିବାଯାଏ ତୁମର ଭୟ କ'ଣ ? ମୁଁ ଆଜି ବନ୍ଦୋବସ୍ତ କରିଦେଉଛି– ତୁମ ଘରକୁ ଯାଇ ଝିଅର ବିଭାଘର ବନ୍ଦୋବସ୍ତ କର। ବିବାହ ସାରି ମନଖୁସିରେ ପୁଣି ବାପଘରକୁ ଆସିବ– ଦେଖିବା କିଏ କ'ଣ କରିବ।''

ଦୁର୍ଗାମଣି କିଛି ନକହି ନୀରବରେ ଲୁହ ଢାଳିବାରେ ଲାଗିଥିଲେ। ଭାମିନୀ ପୁଣି ସ୍ୱାମୀଙ୍କୁ ଲକ୍ଷ୍ୟ କରି କହିଲେ, ''ବାପଛେଉଣ୍ଡ ଝିଅ ବୋଲି ତମ ମନଇଚ୍ଛା ତା' ଉପରେ ଜୁଲମ କରିବ ? ଭଗବାନ୍ ଅଛନ୍ତି ଦୁନିଆରେ। ଦୁର୍ଗା ! ତମେ ଯାହାପାରୁଛ ଦି'ଟା ଖାଇଦିଅ। ପର ପାଇଁ ନିଜେ ଭୋକରେ ରହିବ କାହିଁକି ? ଆଜି ତୁମେ ଶାଶୁଘରକୁ ଚାଲିଯାଅ।''

Digitized by srujanika@gmail.com

ଦୁର୍ଗାମଣି ସେହି ଦିନ ଉପରବେଳା ଫେରିଯବାକୁ ସବୁ ଯୋଗାଡ଼ ହୋଇଗଲା। ଗୋରୁଗାଡ଼ିରେ ଚଢ଼ି ବସିବା ପୂର୍ବରୁ ଦୁର୍ଗାମଣି ଭାଉଜର ପାଦଛୁଇଁ ପ୍ରଣାମ କରି କହିଲେ, "ତୁମେ ମୋର ବଡ଼ଭାଉଜ। ତୁମର ଆଶୀର୍ବାଦ ମୋର କାମ୍ୟ। ମୋ ଝିଅକୁ ଢରରୁ ଭଲକରିବା ଲାଗି ତୁମେ ତୁମର ରୂପାର ଗୋଠ ବିକ୍ରି କରିଦେଇ। କ'ଣ ଦେଇ ଅବା ତୁମ ଉପକାର ଶୁଝିବି? ଭଗବାନ୍ ତୁମର ମଙ୍ଗଳ କରନ୍ତୁ।"

—"ଧନ କ'ଣ ସବୁଦିନ ରହିବ? ସେସବୁ ଦିନକପାଇଁ; କିନ୍ତୁ ସ୍ନେହମମତା ଚିରଦିନ ପାଇଁ। ମୁଁ ଯେପରି ସ୍ୱାମୀ, ବ୍ରାହ୍ମଣ, ଗୋମାତା ସେବା କରୁ କରୁ ହାତର ଶଙ୍ଖା ବଜର କରି ଅହ୍ୟରାଣୀ ହେଇ ଆଗପୁରକୁ ଯାଏ, ସେହି କାମନା କର— ମୋର ଆଉ କିଛି ଦରକାର ନାହିଁ। ମା' ଜ୍ଞାନଦା! ଭଙ୍ଗା ଦେହ— ଖରାରେ ଛିଡ଼ା ନହୋଇ ଗାଡ଼ିରେ ଯାଇ ବସ ମା'! ମାମୁଘରକୁ ପ୍ରଥମେ ଆସି ବହୁତ ହଇରାଣ ହୋଇଛୁ। ଆଉ ଥରେ ଆସିବୁ ମା'! ଭୁଲିବୁନି ଯେମିତି।" କହୁ କହୁ ଭାମିନୀ ଜ୍ଞାନଦା ହାତରେ ଦୁଇ ଟଙ୍କା ଗୁଞ୍ଜିଦେଲା।

ଗାଡ଼ି ଛାଡ଼ିବା ପୂର୍ବରୁ ଦୁର୍ଗାମଣି ଆଖିରୁ ଲୁହ ପୋଛୁ ପୋଛୁ କହିଲେ, "ଭୁଲ ବୁଝି ଅନେକ ଅପରାଧ କରିପକାଇଛି। ଦୋଷା-ଦୋଷ କ୍ଷମା କରିବ ଭାଉଜ!"

ଏତିକିରେ ଭାମିନୀର ଆଖିରୁ ଲୁହ ଝରିପଡ଼ିଲା। ଲୁହ ପୋଛୁ ପୋଛୁ କହିଲା, "ପୋଡ଼ା କପାଳ! ତମେ କ'ଣ ଅପରାଧ କଲ? ଯାହା ସବୁ ତ ଆମେ କଲୁ। ଆରେ ଜ୍ଞାନଦା! ମାମୁ ମାଇଁ ଉପରେ ରାଗ ରଖିବୁନାହିଁ। ଆସନ୍ତା ବର୍ଷ ଆମ୍ବ ପଣସ ପାଚିଲା ମାସରେ ତୋତେ ନିମନ୍ତ୍ରା ରହିଲା। ଜ୍ୱାଇଁବାବୁଙ୍କ ସାଙ୍ଗରେ ଧରି ଆସିବୁ ମା'!" କହୁ କହୁ ତା' ଆଖିରୁ ପୁଣି ଲୁହ ଦୁଇଟୋପା ଗଡ଼ିପଡ଼ିଲା।

## (ଛଅ)

ଦୁର୍ଗାମଣି ଆଗରୁ କୌଣସି ଚିଠିପତ୍ର ନଦେଇ ଘରେ ପହଞ୍ଚି-ଗଲେ। ଜ୍ଞାନଦାକୁ ଦେଖି ବଡ଼ବୋଉ ସ୍ୱର୍ଣ୍ଣମଞ୍ଜରୀ ହସି ହସି ବେଦମ୍

Digitized by srujanika@gmail.com

ହୋଇଗଲେ— "କଙ୍କାଳସାର ଦେହ— ତୋର ଏ କ'ଣ ହେଲା ? ଗାଲ-ପାଟି କ'ଣ ପଶିଯାଇଚି ! ଆଲୋ ସାନବୋହୂ, ଶୀଘ୍ର ଆସ, ଦେଖିବ। ଆମ ଜ୍ଞାନଦା ସୁନ୍ଦରୀକୁ ଦେଖିବ ଆସ। ମାମୁ ମାଇଁ ତୋ' ଦେହରେ ନିଆଁ ଦେଇ କଳାକାଠ କରିଦେଇଛନ୍ତି କି ? ମୁଣ୍ଡବାଳ ଉପୁଡ଼ିଯାଇଛି— ଚନ୍ଦା ଦିଶୁଚି।" ଜ୍ଞାନଦା କିଛି ନକହି ସେମିତି ମୁଣ୍ଡ ପୋତି ଠିଆହୋଇ ରହିଲା। ସାନଖୁଡ଼ୀ ଆସିବାରୁ ସମ୍ଭ୍ରମରେ ତାଙ୍କ ପାଦଧୂଳି ମୁଣ୍ଡରେ ମାରିଲା।

ଜ୍ଞାନଦାର ଚେହେରା ଦେଖି ଖୁଡ଼ୀ ଶିହରିଉଠି କହିଲେ, "ଆଲୋ ମା, ତୁ ଏମିତି କିଆଁ ଦେଖାଯାଉଚୁ ?" ବଡ଼ବୋଉ କହିଲେ, "ପ୍ରେତମୂର୍ତ୍ତି ଭଳି ଦେଖାଯାଉଚି— ଅନ୍ଧାର ରାତିରେ ଦେଖିଲେ ଯେ କେହି ଡରିଯିବ।" —କହୁ କହୁ ପୁଣି ହସିପକାଇଲେ। ଆଜି କିନ୍ତୁ ସାନଖୁଡ଼ୀ ତାଙ୍କ ହସରେ ଯୋଗଦେଲେନାହିଁ। ଯାହା ହେଲେବି ତ ସେ ପୁଅ ଝିଅଙ୍କ ମାଆ— ଜ୍ଞାନଦାର ଏପରି କଙ୍କାଳସାର ଚେହେରା ଦେଖି ତାଙ୍କ ମାତୃହୃଦୟ ଶତଧା ବିଦୀର୍ଣ୍ଣ ହୋଇଗଲା। ପାଖରେ ବସି ଜ୍ଞାନଦାଠାରୁ ଗୁରୁତର ବେମାର ପଡ଼ିବା କଥା ଶୁଣି ବ୍ୟସ୍ତ ହୋଇ କହିଲେ, "ଯଦି ମ୍ୟାଲେରିଆ ରୋଗ ହେଲା, ତେବେ ସଙ୍ଗେ ସଙ୍ଗେ ଆମ ଘରକୁ ଚାଲି ଆସିଥାନ୍ତୁ ନା ! ମାମୁଘରେ ରହି ଏତେସରି ହୋଇ ଆସିଛୁ ! ତମ ଘରକୁ ଆସିବାକୁ ମୁଁ କ'ଣ ମନାକରିଥିଲି କି ? ତୋ' ବୋଉ କାହିଁ ?"

—"ଆସୁ ଆସୁ ମା'ଙ୍କୁ ଗାଡ଼ିରେ ଜ୍ୱର ହେଲା; ଘରେ ଶୋଇଚନ୍ତି ?"

ସ୍ୱର୍ଣ୍ଣ କହିଲେ, "ଜ୍ୱରହେବନି ? ଯେତେହେଲେ ବି ମାନ୍ୟରେ ମୁଁ ବଡ଼; ମୋ କଥା ନମାନି ଚାଲିଗଲେ।"

ସାନବୋହୂ ଜ୍ଞାନଦାର ହାତ ଧରି ମଝିଆଁ ବୋହୂଙ୍କୁ ଦେଖିବାକୁ ...ଙ୍କ ଘର ଆଡ଼କୁ ଯାଉଥିଲେ— ବଡ଼ବୋହୂଙ୍କର କଟୁକଥା ତାଙ୍କୁ ଏପରି ଖରାପ ଲାଗିଲା ଯେ, ସେ ସହିପାରିଲେ ନାହିଁ। ସେ ରାଗିଯାଇ କହିଲେ, "ଅପା, ତୁମେ ଦୁଇବର୍ଷ ମଧୁ-ସଂକ୍ରାନ୍ତି ବ୍ରତ

Digitized by srujanika@gmail.com

କର; ତା'ହେଲେ ପରଜନ୍ମରେ ତୁମ କଥା ଟିକେ ମଧୁର ହେବ।''

ସାନବୋହୂର ଏପରି ମନ୍ତବ୍ୟରେ ରାଗିଯାଇ ସେ କହିଲେ, ''ଭଲ କଥା ସାନବୋହୂ! ଅନେକ ଦିନ ପରେ ମଝିଆଁ ବୋହୂକୁ ଦେଖି ତୋର ଶୋକ ଉଚ୍ଛୁଳିପଡୁଛି। କେତେ ଢଙ୍ଗ ତୁ ଜାଣିଛୁ?''

ସାନବୋହୂ ଆଉ କିଛି ନକହି ମଝିଆଁ ବୋହୂଙ୍କ ପାଖକୁ ଚାଲିଗଲେ। ମା'-ଝିଅଙ୍କ ପ୍ରତି ସ୍ୱର୍ଣ୍ଣମଞ୍ଜରୀଙ୍କର ଦୋଷାରୋପ ଓ ପରିହାସାତ୍ମକ ବ୍ୟବହାର ଜ୍ଞାନଦାକୁ ମୋଟେ ଭଲଲାଗୁନଥିଲା। କିନ୍ତୁ ଖୁଡ଼ୀଙ୍କର ଆତ୍ମୀୟତାପୂର୍ଣ୍ଣ ବ୍ୟବାହାର ତାକୁ ଆଜି ବିଶେଷ ଭଲ ଲାଗିଲା। ବଡ଼ବୋଉଙ୍କ ଦୋଷାରୋପଜନିତ ଦୁଃଖ ଲାଘବ ହେଲାପରି ତାକୁ ଜଣାଗଲା।

ବାପଘରେ ଥିଲାବେଳେ ଦୁର୍ଗାମଣିଙ୍କୁ ଜର ହେଲେ ସେ ଶୋଇପଡ଼ନ୍ତି; ଜର ଛାଡ଼ିଲେ ଉଠି କାମଦାମ କରନ୍ତି, ଗାଧୁଆ-ପାଧୁଆ ସାରି ପୂଜାପାଠ କରନ୍ତି। କିନ୍ତୁ ଏଠାକୁ ଆସି ସେହି ଜରରେ ପଡ଼ି ଶଯ୍ୟାଶାୟୀ ହୋଇପଡ଼ିଲେ। ଏପରି ହେବାର କାରଣ ଥିଲା। ଦୁର୍ଗାମଣି ଘରକୁ ଆସିବା ପରେ ଗାଁର ସ୍ତ୍ରୀଲୋକମାନେ ଆସି ତାଙ୍କୁ ଝିଅ ବିବାହ ଏପର୍ଯ୍ୟନ୍ତ କରାଇପାରିନାହୁଁ ବୋଲି କହି ବ୍ୟସ୍ତ କରାଇପକାଇଲେ। ନୀଳକଣ୍ଠ ମୁଖାର୍ଜୀଙ୍କର ପରିବାର ଆସି କେତେକଥା ଶୁଣାଇ କହିଲେ, ''ଏ କି କଥା ଜ୍ଞାନଦାବୋଉ! ଝିଅ ଘିଅ— ଏପର୍ଯ୍ୟନ୍ତ ବିବାହ ଦେଇନାହଁ। ଝିଅକୁ ତ ଆଉ ମୋଟେ ଚାହିଁହେଉନାହିଁ।''

ବିଛଣାରେ ଶୋଇରହି ଦୁର୍ଗାମଣି କହିଲେ, ''ମୁଁ କ'ଣ କରିବି? ଭଗବାନ୍ ଚାହିଁଲେ ଘଡ଼ିକରେ ହୋଇଯିବ।''

—''ସେକଥା ସତ ଯେ, ତେବେ ଚେଷ୍ଟା କରିବା ଉଚିତ। ଭଗବାନ୍ ତ ବର ଜୁଟେଇଦେବେନି।''

ଦୁର୍ଗାମଣି ଆଉ ଜବାବ ଦେଲେ ନାହିଁ। କିଛି ସମୟ ପରେ ପୁଣି ପ୍ରଶ୍ନ ହେଲା, ''ବାପଘରକୁ ଯାଇଥିଲ, ଭାଇ କ'ଣ କେଉଁଠି ଠିକ୍ କରିପାରିଲେନାହିଁ? ଦିଅର କ'ଣ କେଉଁଠି ବୁଝାବୁଝି କରୁନାହାନ୍ତି?''

—''ଭଗବାନ୍ ଜାଣନ୍ତି'' —କହି ଦୁର୍ଗାମଣି କଡ଼ ଲେଉଟେଇଲେ।

Digitized by srujanika@gmail.com

ଘଣ୍ଟାଏ ପରେ ଆଦରିଣୀ ଘର ଭିତରକୁ ପଶିଆସି କହିଲେ– "କେମିତି ଅଛ ମଝିଆଁ ବୋହୂ?"

ଜ୍ଞାନଦା ବୋଉର ଗୋଡ଼ ମୋଡ଼ିଦେଉଥିଲା। ସେ କହିଲା– "ଜର ଛାଡ଼ିନି ପିଉସୀମା'। ଦୁର୍ଗାମଣି ଆଦରିଣୀଙ୍କୁ ଦେଖିପାରି କହିଲେ– "ବସ।"

–"ବସିବାକୁ ତର କାହିଁ? ଯେମିତି ହେଉ ଏବର୍ଷ ବିଭାଘର କରାଇଦିଅ; ଆଉ ଡେରି କଲେ ଚଳିବନି। ଆଗରୁ ହେଲେ ଜ୍ଞାନଦାର ଭଲ ଚେହେରା ଥିଲା; ଏବେ ମ୍ୟାଲେରିଆ ଜରରେ ପଡ଼ି କଳାକାଠ ପାଲଟିଯାଇଛି। ଆରେ ଜ୍ଞାନଦା, ମୁଣ୍ଡର ଆଗପଟ ବାଳ ଉପୁଡ଼ିଗଲା ନା କ'ଣ?"

ଜ୍ଞାନଦା କିଛି ନକହି ଚୁପ୍‌ହୋଇ ବସିରହିଲା। ଆଦରିଣୀ ନମ୍ରକଣ୍ଠରେ କହିଲା, "ଶୁଣୁଛି, ଆରପଡ଼ାର ଗୋପାଳ ଭଟ୍ଟାଚାର୍ଯ୍ୟ ଆଉ ଥରେ ବାହାହେବ। ଲୋକ ପଠେଇ ଖବର ନେଲେ ହୁଅନ୍ତାନାହିଁ?"

–"ହଉ, ଖବର ନେବି" –କହି ଦୁର୍ଗାମଣି ଶୋଇପଡ଼ିଲେ।

ଏମିତି ପ୍ରତିଦିନ ଦୁର୍ଗାମଣିଙ୍କୁ କିଏ କେତେ ଯେ ଉପଦେଶ ଦେଲେ ତାର ଇୟତା ନାହିଁ; କିନ୍ତୁ ଯାହାକୁ ସେ ଆଜିପର୍ଯ୍ୟନ୍ତ ଅପେକ୍ଷା କରି ରହିଛନ୍ତି, ସେହି ଅତୁଳ କିମ୍ୱା ତା'ର ମା'ର ଦେଖାମିଳିଲାନାହିଁ।

ସାନବୋହୂ ମନରେ ଦୟାମାୟା ଥିଲା– କିନ୍ତୁ ସେ ଅଳସୁଆ। ତା'ପରେ ସେ ଅନ୍ତଃସତ୍ତ୍ୱା। ବଡ଼ବୋହୂ ଯେତେବେଳେ ଜ୍ଞାନଦାକୁ ଡାକି କହିଲେ, "ମା' ଜ୍ଞାନଦା, ବୋଉ ଦେହ ଖରାପ। ସକାଳେ ତୋ' କକା କ'ଣ ଖାଇ ଅଫିସ ଯିବେ? ତାଙ୍କ ଲାଗି ରୋଷେଇ କରିଦେଇପାରିବୁନାହିଁ?" ଘରଭିତରେ ଥାଇ ସାନବୋହୂ ଶୁଣି ଦୁଃଖିତ ହେଲେ– ମାତ୍ର କ'ଣ କରିବେ? ନିଜେ ତ କିଛି କରିପାରିବେ ନାହିଁ, ତେଣୁ ଚୁପ୍ ହୋଇ ରହିଲେ।

ଜ୍ଞାନଦା ସଙ୍ଗେ ସଙ୍ଗେ କହିଲା, "ହଁ ବଡ଼ବୋଉ, ମୁଁ ରୋଷେଇ କରିଦେଇପାରିବି।" ଯଦିଓ ଏବେ ସୁଦ୍ଧା ତାକୁ ଜର ହୋଇ ସକାଳେ

Digitized by srujanika@gmail.com

ପ୍ରତିଦିନ ଛାଡ଼ିଯାଉଛି– ଯେଉଁଥିପାଇଁ ସେ ଏତେ ଦୁର୍ବଳ– ତଥାପି ରୋଗାକ୍ରାନ୍ତା। ମା' ଏ କାମ ଯଦି କରନ୍ତି, ତାଙ୍କର ଜର ଦ୍ୱିଗୁଣ ହେବ ଭାବି ଜ୍ଞାନଦା ରାଜିହୋଇଗଲା, ଟିକେ ହେଲେ ଦ୍ୱିଧା ବା ମନୋଦୁଃଖ କଲାନାହିଁ।

ଦୁଃଖୀ ପିତାମାତାର ଏକମାତ୍ର ଅଲିଅଳ କନ୍ୟା ସେ। ପିଲାଦିନରୁ ଗୁରୁଜନମାନଙ୍କ ଆଜ୍ଞା ଅବଜ୍ଞା କରିନାହିଁ; କିନ୍ତୁ ଆଜି ସେ ଯେ ଅସୁସ୍ଥ ଶରୀରରେ ଏପରି ଗୁରୁଭାର ବହନ କଲା, ଆଉ କେହି ନଜାଣୁ ପଛକେ ସାନବୋହୂ ଅନୁଭବ କଲେ। କିନ୍ତୁ ବଡ଼ଯାଆର ଏପରି ଅନୁଚିତ ଓ ନିଷ୍ଠୁର ଆଦେଶର ପ୍ରତିବାଦ କରିବାକୁ ତାଙ୍କର ସାହସ ହେଲାନାହିଁ; କାରଣ ପ୍ରତିବାଦ କଲେ ଏପରି ଅନ୍ତଃସତ୍ତ୍ୱା ଅବସ୍ଥାରେ ତାଙ୍କୁହିଁ ସକାଳୁ ଉଠି ରୋଷେଇବାସ କରିବାକୁ ହେବ।

ପରଦିନ ଜ୍ଞାନଦାର କକା ଗାଧୋଇସାରି ଖାଇବା ପାଇଁ ଆସିବାରୁ ସେ ଭାତଥାଳି ଧରି ଯାଉ ଯାଉ ବଡ଼ବୋଉ ବଡ଼ପାଟିରେ କହିଲେ, "କୁଆଡ଼େ ଭାତ ନେଇ ଯାଉଚୁ ?"

ଜ୍ଞାନଦା ଡରିଯାଇ କହିଲା, "କକାଙ୍କ ପାଖକୁ ନେଇ ଯାଉଚି।"

–"ତୋତେ କିଏ କହିଲା, ଭାତ ନେଇ ଯିବାକୁ ? ତୁ ଭାତ ଛୁଇଁ ପରଷିଲେ ପୁରୁଷ ଲୋକ କ'ଣ ଖାଇବେ ?"

ଦୁର୍ଗାମଣି ବିଛଣାରୁ ଉଠି ବାରଣ୍ଡାରେ ବସିଥିଲେ। ସବୁ ଶୁଣି ଭୟରେ କିଛି କହିନପାରି କେବଳ ଚାହିଁରହିଲେ।

ସାନବୋହୂ ଘରୁ ବାହାରି ପଚାରିଲେ, "କ'ଣ ହୋଇଛି କି ଅପା ?"

ସ୍ୱର୍ଣ୍ଣମଞ୍ଜରୀ ତାଙ୍କ କଥାକୁ ଭ୍ରୂକ୍ଷେପ ନ କରି ଜ୍ଞାନଦାକୁ ତିରସ୍କାର କରି କହିଲେ, "ନିଜେ ଭାତ ନେଇ କକାକୁ ଖାଇବାକୁ ଦେଲେ ତୋତେ ସେ ମୁଣ୍ଡରେ ମୁଣ୍ଡେଇ ବୁଲିବେ– ତୋ' ପାଇଁ ରାଜପୁତ୍ରଟିଏ ଆଣି ବାହା କରାଇଦେବେ ! ଏଇ ବୟସରୁ ଏତେ କଥା ଶିଖିଲୁଣି !" –କହୁ କହୁ ସେ ତା'ହାତରୁ ଭାତଥାଳିଟା ଛଡ଼େଇନେଲେ।

ଝିଅ ପ୍ରତି ଏପରି କଟୂକ୍ତି ଶୁଣି ଦୁର୍ଗାମଣି ସହିପାରିଲେନାହିଁ।

Digitized by srujanika@gmail.com

ସେ ଜ୍ଞାନଦାକୁ ଉଦ୍ଦେଶ୍ୟ କରି କହିଲେ, "ପୋଡ଼ାମୁହାଁ, ଗୁରୁଜନଙ୍କ ବୋଲ ଯଦି ନ ମାନୁଛୁ, ତେବେ ତୋତେ ମରଣ ହେଉନି କାହିଁକି ?"

ସବୁ ଶୁଣି ଜ୍ଞାନଦା ନୀରବରେ ରୋଷେଇଘର ଭିତରକୁ ଚାଲିଗଲା । ପୂର୍ବରୁ ଏ ବିଷୟରେ ତାକୁ କେହି କିଛି କେବେ କହିନଥିଲେ; ତେଣୁ ସେ ପ୍ରତିବାଦ କଲାନାହିଁ– ପ୍ରତିବାଦ କ'ଣ ସେ କେବେ ଜାଣିନଥିଲା ।

ଏ କଥାରେ କେହି ଯଦି ପ୍ରତିବାଦ କରିଥାନ୍ତେ, ସେ କେବଳ ସାନବୋହୂ– କିନ୍ତୁ ସେ ବଡ଼ବୋହୂଙ୍କୁ ଭଲକରି ଜାଣନ୍ତି ବୋଲି କିଛି କହିଲେ ନାହିଁ । ବଡ଼ଯାଆ ଯେମିତି ମୁଖରା ସେମିତି ଆତ୍ମମର୍ଯ୍ୟାଦାଜ୍ଞାନଶୂନ୍ୟ । ଲଜ୍ଜା କ'ଣ ସେ ଜାଣନ୍ତି ନାହିଁ; ନିଜର ଦୋଷ ଥିଲେ ବି ନିଷ୍ଠୁର ହୋଇ କାଳେ କାଳେ କ'ଣ କହିଦେବେ ଭାବି ସାନବୋହୂ ନୀରବରେ ରୋଷେଇଘରକୁ ଚାଲିଗଲେ । ଜ୍ଞାନଦାକୁ ବୁଝେଇ କହିଲେ, "ବଡ଼ବୋଉଙ୍କ କଥା ସେମିତିକା– ତାଙ୍କ କଥା ଧରିବୁନି ମା' !"

ଏତେବେଳ ପର୍ଯ୍ୟନ୍ତ ଜ୍ଞାନଦା ସବୁ ସହି ନୀରବ ରହିଥିଲା । ଦୁଃଖୀ ନିର୍ଯାତିତ ବ୍ୟକ୍ତି ଅନ୍ୟଠାରୁ ଆଶ୍ୱାସନା ଟିକିଏ ପାଇଲେ ତାର ହୃଦୟ ବିଚଳିତ ହୋଇଥାଏ । ଖୁଡ଼ୀଙ୍କର ସ୍ନେହପୂର୍ଣ୍ଣ କଥା ଶୁଣି ସେ କହିଲା, "କକାଙ୍କ ପାଖକୁ ଭାତ ନେଇ ଯିବାକୁ ମୋତେ କେହି ପୂର୍ବରୁ ବାରଣ କରିନଥିଲେ । ଯଦି କହିଥାନ୍ତେ, ମୁଁ କେବେ ନେଇକରି ଯାଇନଥାନ୍ତି ।" ଏହା କହୁ କହୁ ସେ କଇଁକଇଁ ହୋଇ କାନ୍ଦିଉଠିଲା ।

ସାନ ଖୁଡ଼ୀ ତାର ଆଖିରୁ ଲୁହ ପୋଛିଦେଲେ । କିନ୍ତୁ କେମିତି ଯେ ସାନ୍ତ୍ୱନା ଦେବେ, ଚିନ୍ତା କରିପାରିଲେନାହିଁ । ଏଭଳି ଦୁଃଖ ନିର୍ଯାତନା ଭିତରେ ଏହି ଅନୂଢ଼ା କନ୍ୟାର ଦିନ କଟିବାକୁ ଲାଗିଲା । ଘରେ, ବାହାରେ ଓ ସାଇପଡ଼ିଶା କେବଳ ତାକୁ ଲାଞ୍ଛନା ଦେବାକୁ ଲାଗିଲେ । କିନ୍ତୁ ଏହି ଲାଞ୍ଛନାରୁ ତାକୁ କିପରି ରକ୍ଷା ମିଳିବ କେହି ତିଳେହେଲେ ଚେଷ୍ଟାକଲେନାହିଁ ।

Digitized by srujanika@gmail.com

## (ସାତ)

ଦୁର୍ଗାମଣି ବହୁଦିନ ମ୍ୟାଲେରିଆ ଜ୍ୱରରେ ପୀଡ଼ିତ ହୋଇ ବିଶେଷ ଦୁର୍ବଳ ହୋଇପଡ଼ିଥିଲେ। ତାଙ୍କୁ ଧରାଧରି ନକଲେ ସେ ଉଠି ବସି ପାରନ୍ତିନାହିଁ। ହଜାରେ କାମ ଥିଲେ ବି ଜ୍ଞାନଦା ଆସି ମା' ପାଖରେ ବସେ; ତାଙ୍କର ସେବା କରେ। ଆଜି ହଠାତ୍ ଏକ ସୁପରିଚିତ କଣ୍ଠସ୍ୱର ଶୁଣିପାରି ଜ୍ଞାନଦାର ବୁକୁ ଭିତରଟା ଯେପରି ଥରିଉଠିଲା।

ଦୋଳପୂର୍ଣ୍ଣିମା ପରଦିନ— ପାଣି-ହୋଲି। ଦୋଳଛୁଟି ଯୋଗୁଁ ଅତୁଳ ଘରକୁ ଆସିଥିଲା। ଗାଆଁର ଦୁଇତିନି ଜଣ ସାଥୀଙ୍କ ସହ ପକେଟ୍‌ରେ ରଙ୍ଗ ପିଚକାରି ରଖି ସେ 'ମାଉସୀ' 'ମାଉସୀ' ଡାକି ଘର ଭିତରକୁ ପଶିଆସିଲା।

ଦୁର୍ଗାମଣି ରାତିସାରା ଶୋଇପାରିନଥିଲେ; ତାଙ୍କୁ ଟିକିଏ ଛାଇନିଦ ଲାଗିଯାଇଥିଲା। ଅତୁଳର ଡାକ ଶୁଣି ସେ କାଳେ ଉଠିପଡ଼ିବେ— ଏଇ ଭୟରେ ଜ୍ଞାନଦା ବ୍ୟସ୍ତ ହୋଇଗଲା। ଅତୁଳକୁ ସେ ଯେ ଆଜିପର୍ଯ୍ୟନ୍ତ ଅପେକ୍ଷା କରିଚି, ସେ କଥା ସେ ଜାଣେ। ତଥାପି ତା'ର ଆଉ ସେ ଧୈର୍ଯ୍ୟ ନଥିଲା— ବୁଦ୍ଧିବିବେକ ସବୁ ଯେପରି ପ୍ରତୀକ୍ଷା କରି କରି ଲୋକପାଇଯାଇଥିଲା। ମା' ଯଦି ଏବେ ଅତୁଳକୁ ଦେଖିପକାଏ, କଳି ସେ ନିଶ୍ଚୟ କରିବସିବ, ଏକଥା ଜ୍ଞାନଦା ଭଲକରି ଜାଣିଥିଲା। କ'ଣ କଲେ ଏହି ବିପଦକୁ ଏଡ଼ାଇ ହେବ, ସେ ଚିନ୍ତା କରୁଚି, ଏତିକିବେଳେ ମା' ତାର ଡାକି କହିଲେ, "ଆରେ ଜ୍ଞାନଦା, ଅତୁଳର ପାଟି ଶୁଭିଲା ନା କ'ଣ ? ଦେଖିଲୁଯାଇ।" ଜ୍ଞାନଦା ଚୁପ୍‌ଚୁପ୍ ଯାଇ କବାଟ ବନ୍ଦକରୁଥିଲା— ସେ କହିଲା, "ନା ମା', ସେ ନୁହଁନ୍ତି।"

—"ହଁ... ସେଇ ତ। ତା'ରି ପାଟି ଭଳି ଶୁଭୁଛି। ତୁ ଯାଇ ଭଲକରି ଦେଖିଆସିଲୁ।"

ମା' ସହ ତର୍କ କଲେ ସେ ରାଗିଉଠନ୍ତି, ଜ୍ଞାନଦା ଏକଥା ଜାଣେ। ତେଣୁ ସେ ଉଠିଯାଇ ଉଙ୍କିମାରି ଦେଖିଲା— କାହାରି ଦେଖା

Digitized by srujanika@gmail.com

ମିଳିଲାନାହିଁ। ବାରଣ୍ଡାରେ ତ ତାଙ୍କର ପାଟି ଶୁଭାଗଲା– ସେତିକି କଥା ସେ ମା' ଆଗରେ କହିପାରିଥାନ୍ତା; କିନ୍ତୁ ଏତେଦିନପରେ ନିଜେ କିପରି ତା'ର ଅନ୍ତରର ଦେବତାଙ୍କୁ ଥରେ ମାତ୍ର ଦେଖିପାରନ୍ତା, ସେଥିଲାଗି ଜ୍ଞାନଦା ବ୍ୟସ୍ତ ହୋଇଉଠିଲା। ସେ ଦେଖିଲା, ଅତୁଳ ବଡ଼ମାଉସୀ ପାଦରେ ଅବିର ବୋଳିଦେଇ ହସୁଥିଲା। ତାର ସାଥୀପିଲାମାନେ ମଧ୍ୟ ସେଇଆ କଲେ।

ସ୍ୱାନବୋହୂ ସେଠାରେ ନଥିଲେ– ଘର ଭିତରେ କାର୍ଯ୍ୟବ୍ୟସ୍ତ ଥିଲେ। ଜ୍ଞାନଦା ଫେରିବ ଫେରିବ ବୋଲି ଡେରି ହୋଇଗଲା। ଜ୍ଞାନଦା ଯେଉଁ ଭୟ କରୁଥିଲା, ସେଇଆ ହେଲା। ମା' ତା'ର ଅସୁସ୍ଥ ଦେହରେ ଟଳିଟଳି ବାହାରକୁ ଚାଲିଆସିଲା।

ଜ୍ଞାନଦା ଦୌଡ଼ିଯାଇ ତା'ର ମା'ଙ୍କୁ ଜାବୁଡ଼ିଧରି କହିଲା– ''ଯାଆନା ମା'! ଫେରିଆସ।''

ଦୁର୍ଗାମଣି ରାଗିଯାଇ କହିଲେ– ''କାହିଁକି ?''

–''କାହିଁକି ଜାଣେନା... ତେବେ ଆଉ ଆଶା ରଖିବା ଠିକ୍ ନୁହେଁ।''

''ମୋତେ ଛାଡ଼ିଦେ ହତଭାଗୀ''– କହି ସେ ଜ୍ଞାନଦା କବଳରୁ ଖସି ଧୀରେ ଧୀରେ ଚାଲିଗଲେ। ଜ୍ଞାନଦା ଏବେ ବାଧ ହୋଇ ମା' ପଛେ ପଛେ ଚାଲିଲା। ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖିଲେ– ମଝିଆଁବୋହୂ ମଧ୍ୟ ଅସୁସ୍ଥ ଦେହରେ ସେଠାରେ ହାଜର।

ଦୁର୍ଗାମଣିଙ୍କ କଙ୍କାଳସାର ଶରୀରରେ କ୍ଷୁଧିତ ବ୍ୟାଘ୍ରର ଚାହାଣି ଥିଲା। ତାଙ୍କୁ ଚାହିଁଦେଇ ଅତୁଳ ତଳକୁ ମୁହଁ ପୋତି ଠିଆହେଲା। ଦୁର୍ଗାମଣି କହିଲେ, ''ଅତୁଳ, ମୁଁ ତୋର କ'ଣ କ୍ଷତି କରିଥିଲି ଯେ ତୁ ମୋର ସର୍ବନାଶ କଲୁ ?'' ଅତୁଳ ଯେ କ'ଣ ଜବାବ ଦେବ ସ୍ଥିର କରିପାରିଲାନାହିଁ; ଅପରାଧୀଭଳି ସେମିତି ଠିଆହୋଇରହିଲା।

ସ୍ୱର୍ଣ୍ଣମଞ୍ଜରୀ ଅତି ନିଷ୍ଠୁର ଭାବରେ ପଚାରିଲେ, ''ଅତୁଳ ତୋ'ର ଏମିତି କ'ଣ ସର୍ବନାଶ କଲା ?''

–''ତୁମକୁ ତା'ର ଉତ୍ତର କ'ଣ ଦେବି ଅପା ? ଯାହାକୁ ପଚାରୁଛି

Digitized by srujanika@gmail.com

ସେହି ତାର ଉତ୍ତର ଦେବ।''

ସ୍ୱର୍ଣ୍ଣମଞ୍ଜରୀ କହିଲେ, ''ତୋ' ଝିଅକୁ ବିଭା ହେବ ବୋଲି ଅତୁଳ କ'ଣ ଲିଖିତ ଜବାବ ଦେଇଛି ଯେ, ଏତେ ଲୋକଙ୍କ ଆଗକୁ ତୁ ମାଡ଼ିଆସୁଛୁ ? ଘରକୁ ଯାଆ— ପୂଜାପର୍ବ ଦିନରେ ମୋ' ଘରେ ବିନା କାରଣରେ କଳି ସୃଷ୍ଟି କରନା।''

—''ବିନା କାରଣରେ ମୁଁ କଳିକରିବାକୁ ଆସିନାହିଁ।'' ସେ ଅତୁଳକୁ ଚାହିଁ କହିଲେ, ''କେମିତି ଯେ ଏଇ ଗୋଟିଏ ବର୍ଷ ଆମେ ଅତିବାହିତ କଲୁ, ତାହା ଭଗବାନ୍ ଜାଣନ୍ତି। ତୋ' ମନରେ ଯଦି ଏଇଆ ଥିଲା, ତେବେ ତୋ' ମଝିଆଁ ମଉସାଙ୍କ ମୃତ୍ୟୁବେଳେ ତାଙ୍କୁ କଥା ଦେଇଥିଲୁ କାହିଁକି ? ସେତେବେଳେ ମନାକଲୁନାହିଁ କାହିଁକି ?''

ସ୍ୱର୍ଣ୍ଣମଞ୍ଜରୀ ଚିଡ଼ିଉଠି କହିଲେ, ''ପୁତୁରାକୁ ମୋର ରାଣ ନିୟମ ଦେଖାନା କହୁଛି, ଭଲହେବନାହିଁ। ଆମେ ବଞ୍ଚି ଥାଉଁ ଥାଉଁ ସେ କଥା ଦେବାକୁ କିଏ ?''

ଏତେ ଲୋକଙ୍କ ଆଗରେ ଅତୁଳ ଅପମାନିତ ବୋଧକଲା। ସେ ମାଉସୀର ବଳ ପାଇ କହିଲା, ''ମୁଁ ନିଜେ ବିଭା ହେବି ବୋଲି କ'ଣ କଥା ଦେଇଥିଲି ? କ'ଣ ସେକଥା କହିବି ମାଉସୀ— ମଉସାଙ୍କ ଶେଷ ସମୟରେ ଜ୍ଞାନଦା ମୋ' ଗୋଡ଼ଧରି କାନ୍ଦି କାନ୍ଦି କହିଲା— ବାପାଙ୍କୁ ଆପଣ କଥା ଦିଅନ୍ତୁ ଅତୁଳ ଭାଇ! କହିଛି କି ନାହିଁ ପଚାରୁନାହଁ ? ସେ ପରିସ୍ଥିତିରେ ମୁଁ କ'ଣ କରିପାରିଥାନ୍ତି ? ଏତେ ଲୋକଙ୍କ ଆଗରେ ଲଜ୍ଜାରୁ ରକ୍ଷାପାଇବା ପାଇଁ ବାଧ୍ୟ ହୋଇ ଗୋଟିଏ କୌଶଳ କରି ଯଦି କିଛି କଥା କହିଥାଏ, ତେବେ ତାକୁ କ'ଣ କଥା ଦିଆଗଲା ବୋଲି ଧରାଯିବ ?''

ସ୍ୱର୍ଣ୍ଣମଞ୍ଜରୀ ଖିଲିଖିଲି ହସି କହିଲେ, ''ଛିଃ ଛିଃ... କି ଲାଜକଥା। ତୁ କେମିତି ଏ କଥା ମୁହଁରେ ଧରିପାରୁଛୁ ଯେ ଜ୍ଞାନଦା ନିଜେ ତୋ' ଗୋଡ଼ ଧରି କାନ୍ଦି କାନ୍ଦି କହିଥିଲା ତାକୁ ବିବାହ କରିବାକୁ ? ଛିଃ ଛିଃ !''

ଅତୁଳ କହିଲା, ''ସତ କି ମିଛ ଜ୍ଞାନଦାକୁ ପଚାରୁନାହଁ।

Digitized by srujanika@gmail.com

ମଝିଆଁ ମାଉସୀଙ୍କୁ ପଚାର– ଜ୍ଞାନଦା ମୋର ପାଦ ଧରିଥିଲା କି ନାହିଁ! ଏମିତିକା ଝିଅକୁ ମୁଁ ବିଭାହେବି ? ମୋତେ କ'ଣ ମରିବାକୁ ରଣିଖଣ୍ଡେ ମିଳିବ ନାହିଁ ?''

ଅତୁଳର ସାଙ୍ଗମାନେ ତା' କଥାରେ ମୁରୁକେଇ ହସୁଥାନ୍ତି। ଦୁର୍ଗାମଣି ପାଗଳିନୀ ଭଳି କହିଲେ, ''ଆରେ ନିଷ୍ଠୁର, କୃତଘ୍ନ! ମୁଁ ରଣି କିଣିଦେଉଛି– ନେଇ ମରିବୁ ଯାଆ। ତୁ ମରିବା ଉଚିତ। ଯେଉଁ ଝିଅ ଦିନେ ତୋତେ ଯମହାତରୁ ଫେରାଇ ଆଣିଥିଲା, ଆଜି ଏତେ ଲୋକ ସାମନାରେ ତୁ ତାକୁ ଅପମାନ ଦେଲୁ– ପଛର ସବୁ କଥା ଭୁଲିଗଲୁ!''

ପାଟିତୁଣ୍ଡ ଶୁଣି ସାନବୋହୂ ଘରୁ ବାହାରିଆସି ଦେଖନ୍ତି ତ, ସ୍ୱର୍ଣ୍ଣମଞ୍ଜରୀ ପାଟିକରି କହୁଛନ୍ତି, ''ଉଠ ହତଭାଗୀ, ମୋ' ଘରୁ ବାହାରିଯା କହୁଚି।''

ଜ୍ଞାନଦା ଏସବୁ ଉକ୍ତି-ପ୍ରତ୍ୟୁକ୍ତି ଶୁଣି ଜଡ଼ପାଲଟିଯାଇଥାଏ। ଲଜ୍ଜା, ଅପମାନ, ଘୃଣା, ମାନ-ଅଭିମାନ ତାହାକୁ ସ୍ପର୍ଶ କରିପାରୁନଥିଲା। ସେ ପଥରଟାଏ ପରି ସେମିତି ନିଶ୍ଚଳ ହୋଇ ଠିଆ ହୋଇଥାଏ। ତା'ର ଏ ଭାବବିହ୍ୱଳ ମୂର୍ତ୍ତି ଦେଖି ସାନବୋହୂ ତାକୁ ହଲେଇଦେଇ ଡାକିଲେ– ''ମା' ଜ୍ଞାନଦା!''

ଜ୍ଞାନଦା ଚମକି ପଡ଼ି କହିଲା, ''କ'ଣ ଖୁଡ଼ୀ ?''

–''ଯା ମା', ତୋ' ମା'ଙ୍କୁ ଘରକୁ ନେଇଯା।''

–''ଚାଲ ମା'!'' –କହି ଦୁର୍ଗାମଣିଙ୍କ ହାତ ଧରି ସେ ଘର ଭିତରକୁ ନେଇ ଚାଲିଗଲା।

ସ୍ୱର୍ଣ୍ଣମଞ୍ଜରୀ କହିଲେ, ''ଦେଖିଲୁ ସାନବୋହୂ! ଝିଅର ସାହସ ଦେଖିଲୁ! ବାମନ ହୋଇ ଚାନ୍ଦ ଧରିବାକୁ ଚେଷ୍ଟାକରୁଚି।''

ଅତୁଳ ହସିବାର ଉପକ୍ରମ କରି କହିଲା, ''ଦେଖୁଚ ସାନ ମାଉସୀ! କି ଅପମାନଜନକ କଥା ଏସବୁ।''

ସ୍ୱର୍ଣ୍ଣ ରାଗ-ତମତମ ହୋଇ କହିଲେ, ''ଝିଅ ବୋଲି ବକଟେ– ତା'ର ସାହସ ଦେଖ।''

Digitized by srujanika@gmail.com

—"ଏ କଳିକାଳ ବୋଲି ଚଳୁଛି; ନହେଲେ ଅନ୍ୟ କେଉଁ ଯୁଗ ହୋଇଥିଲେ ମା' ବସୁନ୍ଧରା ଦୁଇଫାଳ ହୋଇ ଫାଟିଯାଆନ୍ତାଣି ଅତୁଳ!" —କହୁ କହୁ ସାନବୋହୂ ଘରଭିତରକୁ ଚାଲିଗଲେ।

ସ୍ୱର୍ଣ୍ଣମଞ୍ଜରୀ ତାଙ୍କ ବିଦ୍ରୂପ ବୁଝିନପାରି ଉତ୍ସାହିତ ହୋଇ କହିଲେ, "ସେଇ କଥା ତ ମୁଁ କହୁଛି ସାନବୋହୂ!"

ଅତୁଳର ମୁହଁ କିନ୍ତୁ କଳାପଡ଼ିଗଲା। ସେ ସାନ ମାଉସୀଙ୍କ କଥାର ତାତ୍ପର୍ଯ୍ୟ ବୁଝିପାରିଥିଲା। କିଛି ସମୟ ସ୍ତବ୍ଧ ଭାବରେ ବସିରହି ଯେତେବେଳେ ସେ ଆପଣାଛାଏଁ ଉଠି ଚାଲିଯାଉଥିଲା, ସେତେବେଳେ ତାର ମନେହେଉଥିଲା, ସତେ ଯେପରି ତା' ପୋଷାକରେ ଲାଲ ଓ ମୁହଁରେ କଳା ରଙ୍ଗ ଏହି ପବିତ୍ର ହୋଲି ଦିବସରେ କିଏ ଲଗେଇଦେଇଛି।

ଅସଲ କଥାଟା ଆଜିପର୍ଯ୍ୟନ୍ତ ପ୍ରକାଶ ପାଇନଥିଲା— କିନ୍ତୁ ଆଉ ବେଶୀ ଦିନ ଲୁଚିରହିପାରିଲାନାହିଁ। ଗାଁର ଲୋକଙ୍କଠୁଁ ଦୁର୍ଗାମଣି ଶୁଣିବାକୁ ପାଇଲେ ଯେ, ତାଙ୍କ ଦିଅର ଅନାଥର ବଡ଼ ଝିଅ ମାଧୁରୀ ସାଙ୍ଗରେ ଅତୁଳର ବିବାହ ସ୍ଥିରହୋଇଛି। ଏଥିରେ ମଧ୍ୟସ୍ଥତା କରିଛନ୍ତି ବଡ଼ବୋହୂ ସ୍ୱର୍ଣ୍ଣମଞ୍ଜରୀ। ଅତୁଳ ମଧ୍ୟ ମାଧୁରୀକୁ ଦେଖି ଖୁବ୍ ପସନ୍ଦ କରିଛି।

## (ଆଠ)

ମାଧୁରୀ ପିଲାଦିନୁ କଲିକତାରେ ମାମୁଘରେ ରହି ମହାକାଳୀ ପାଠଶାଳାରେ ପଢୁଥିଲା। ଇଂରାଜୀ, ବଙ୍ଗଳା, ସଂସ୍କୃତ ଭାଷା ଶିଖିଛି। ଗାଇବା, ବଜାଇବା, କାର୍ପେଟ୍ ବୁଣିବା ଆଦି ଜାଣିଛି। ଦେଖିବାକୁ ଅନିନ୍ଦ୍ୟ-ସୁନ୍ଦରୀ— ଗୋଟିଏ ଚାଉଳରେ ଗଢ଼ା। ପୂଜାଛୁଟିରେ ଦୁଇମାସ ଛୁଟି କଟାଇବାକୁ ଗାଁକୁ ଆସିଥିଲାବେଳେ ବାହାଘର ପ୍ରସ୍ତାବ ପଡ଼ିଥିଲା। ଅତୁଳ ଭଳି ଗୁଣବନ୍ତ ପାତ୍ର ଠିକ୍ କରିବାକୁ କଷ୍ଟ ହୋଇନାହିଁ— ଆପଣାଛାଏଁ ହୋଇଛି। ବଡ଼ବୋହୂ ସ୍ୱର୍ଣ୍ଣମଞ୍ଜରୀ ମଧ୍ୟସ୍ଥତା କରିଛନ୍ତି।

ସାନବୋହୂଙ୍କ ଭାଇମାନେ ଅବସ୍ଥାପନ୍ନ। ମା' ବି ବଞ୍ଚିଛନ୍ତି।

Digitized by srujanika@gmail.com

ଝିଅ ଆସନ୍ନପ୍ରସବା ଜାଣି ମା' ତାଙ୍କୁ କଲିକତା ନେଇଯିବାକୁ ଲୋକ ପଠାଇଲେ। ସେହି ଲୋକ ସାଙ୍ଗରେ ମାଧୁରୀ ଗାଁକୁ ଆସିଥିଲା। ଅନେକ ଦିନ ପରେ ସେ ଘରକୁ ଆସିଛି– ଗୁରୁଜନମାନଙ୍କୁ ପ୍ରଣତି ଜଣାଇଲା। ଦୁର୍ଗାମଣିଙ୍କ ପାଖକୁ ଯାଇ ନମସ୍କାର କଲା।

–"ଦୀର୍ଘଜୀବୀ ହୁଅ ମା'!" –କହି ଦୁର୍ଗାମଣି ଅପଲକ ନୟନରେ ମାଧୁରୀକୁ ଚାହିଁରହିଲେ। ଏକେ ତ ମାଧୁରୀ ଅତି ସୁନ୍ଦରୀ, ତା' ସାଙ୍ଗକୁ ତାର ମାଇଁମାନେ ତାକୁ ଉତ୍ତମ ଅଳଙ୍କାର ପିନ୍ଧାଇ ଦେଇଥିବାରୁ ତା'ର ସୌନ୍ଦର୍ଯ୍ୟ ଦ୍ୱିଗୁଣିତ ଦେଖାଯାଉଥିଲା। ପାଶ୍ଚାତ୍ୟ ଶିକ୍ଷା-ସଭ୍ୟତାଯୋଗୁଁ କଲିକତା ଅତ୍ୟାଧୁନିକ ସହର। ସେଠାରେ ରହିଥିବାରୁ ମାଇଁମାନେ ସାଜସଜ୍ଜା ଭଲକରି ଜାଣନ୍ତି। ମାଧୁରୀ ନିଜକୁ ବେଶ୍ ସଜାଇ ଜାଣେ। ସେ କୁଞ୍ଚକରି ଲାଲ ଚଉଡ଼ା ଧଡ଼ି ଥିବା ଶାଢ଼ି ପିନ୍ଧିଛି। ସର୍ପପରି ଲମ୍ବା ବେଣୀ। କପାଳରେ କୁଙ୍କୁମ ଟିକା। ମାଧୁରୀକୁ ଚାହିଁ ଦୁର୍ଗାମଣିଙ୍କର ଆଖିପତା ପଡୁନାହିଁ। ହଠାତ୍ ଦୀର୍ଘନିଶ୍ୱାସ ପକାଇ ସେ କହିଲେ, "ଝିଅ ନୁହେଁ ତ ଦୁର୍ଗାପ୍ରତିମା।" ପାଦତଳେ ବସିଥିବା ନିଜ ଝିଅକୁ ଚାହିଁବାରୁ ତାଙ୍କର ରାଗ ବଢ଼ିଗଲା। କଡ଼ ଲେଉଟେଇ କହିଲେ, "ମୁଁ ତ ଝିଅ ଜନ୍ମ କରିଛି– ସତେ ଯେପରି କଙ୍କାପେଚା!"

ମାଧୁରୀର ସେ ରୂପ ଓ ସାଜସଜ୍ଜା ଦେଖି ଜ୍ଞାନଦା ନିଜକୁ ହୀନମନେକଲା। ମାଧୁରୀ କହିଲା, "ଅପା, ଚାଲ ବସି ଗପକରିବା।"

ତା'ର ଉତ୍ତର ଜ୍ଞାନଦା ଯେ କ'ଣ ଦେଲା, ସେହି ଏକା ବୁଝିଲା। କିନ୍ତୁ ତା' କଥା ଶୁଣି ଦୁର୍ଗାମଣି ଚିଡ଼ିଉଠି କହିଲେ, "ପୋଡ଼ାମୁହଁ କୁଆଡ଼େ ଯାଇପାରିବୁନାହିଁ। ଘରେ ବସିଥା।" ଜ୍ଞାନଦା ନୀରବରେ ବସିରହିଲା।

ମାଧୁରୀ ଚାଲିଯିବାପରେ ଦୁର୍ଗାମଣି ହତାଶାରେ ମନକୁମନ ଉଃ-ଆଃ ହେଲେ। ଜ୍ଞାନଦା କହିଲା, "ମା'! ମୁଣ୍ଡ ଟିକେ ଚିପିଦେବି?"

–"ନା।"

–"ଔଷଧ ଦେବି କି?"

Digitized by srujanika@gmail.com

—"ଆଲୋ ନା-ନା। ତୁ ମୋ' ବିଛଣାରୁ ଉଠିଯା' କହୁଚି। ତୋ' ମୁହଁ ଚାହିଁଲେ ମୋର ସର୍ବାଙ୍ଗ ଜଳିପୋଡ଼ିଯାଉଛି।" —ଏହା କହି ସେ ତାକୁ ପାଦରେ ଜୋର୍‌ରେ ଠେଲିଦେଲେ।

ଜ୍ଞାନଦା ଅନେକ ସହିଥିଲା। କିନ୍ତୁ ବୋଉର ଗୋଡ଼ ଧକ୍‌କାରେ ସେ ତଳେ ପଡ଼ିଗଲା। ତା' ଦୁଇଆଖିରୁ ଲୁହଧାର ଅବିରତ ଝରି ମାଟି ଭିଜିଲା। ସେ ଭଗବାନ୍‌ଙ୍କ ଉଦ୍ଦେଶ୍ୟରେ ବିକଳରେ ଜଣାଇଲା— "ପ୍ରଭୁ, ମୁଁ ଏପରି କ'ଣ ଦୋଷ କରିଥିଲି ଯେ, ଥାଳି ସବୁରି କଣ୍ଟା ହୋଇଛି। ମୋର ରୂପ ନାହିଁ— ବସନଭୂଷଣ ନାହିଁ— ମୋର ବାପା ନାହାନ୍ତି— ଏସବୁ କ'ଣ ମୋର ଦୋଷ ? ମୋର କଙ୍କାଳସାର ରୋଗଗ୍ରସ୍ତ ଦେହ ଓ ଅସୁନ୍ଦର ରୂପ ଯେ ଅନ୍ୟକୁ ଆକର୍ଷଣ କରିପାରିଲାନାହିଁ ସେ କ'ଣ ମୋର ଦୋଷ ପ୍ରଭୁ ? ମୋର ବୟସ ବଢ଼ି ବଢ଼ି ଯାଉଛି। ମୋତେ ବିବାହ ଦେବାକୁ ମୋର ନିଜର ବୋଲି କେହି ନାହାନ୍ତି— ସେ କ'ଣ ମୋର ଅପରାଧ ? ଏସବୁ ଯଦି ମୋର ଦୋଷ, ତେବେ ପ୍ରଭୁ, ମୋର ବାପା ଯେଉଁଠି ଅଛନ୍ତି ମୋତେ ସେଇଠାରେ ସ୍ଥାନ ଦିଅନ୍ତୁ। ସେ କେବେହେଲେ ମୋତେ ତାଙ୍କ କୋଳରରୁ ଠେଲିଦେବେନାହିଁ।"

"ଜ୍ଞାନଦା !"— ମା' ଡାକିବାରୁ ଜ୍ଞାନଦା ଆଖିରୁ ଲୁହ ପୋଛି ଉଠି ବସିଲା।

—"ତୋର ଭଙ୍ଗା ଦେହ— ହାଲି ରୋଗରୁ ଉଠିଛୁ। ଓଦାମାଟି ଉପରେ ବସିଛୁ କାହିଁକି ମା' ?" —ଏହା କହି ଦୁର୍ଗାମଣି ଉତ୍କଣ୍ଠାର ସହ ଉଠି ବସିଲେ। "ତୋତେ ଗାଳିଦେଇଛି... ଅଭିମାନ କଲୁ ମା' ?" —ଏହା କହୁ କହୁ ତାଙ୍କ ଚକ୍ଷୁ ଲୋତକାପ୍ଲୁତ ହୋଇଗଲା। ସେ ଜ୍ଞାନଦାକୁ କୋଳକୁ ଟାଣିଆଣିଲେ।

ସେଦିନ ସଂଧ୍ୟାରେ ଅନାଥ ହଠାତ୍ ଦୁର୍ଗାମଣିଙ୍କ ଘରକୁ ପଶିଆସି ବିଷଣ୍ଣ ବଦନରେ କହିଲେ, "ଆଜି କେମିତି ଅଛ ଭାଉଜ ?" ଅନାଥଙ୍କ ଡାକ ଶୁଣି ଦୁର୍ଗାମଣି ଶେଯରୁ ଉଠିବାକୁ ଉପକ୍ରମ କରିବାରୁ ସେ କହିଲେ, "ନା ଭାଉଜ, ଉଠନାହିଁ। ଶୁଣିଲି, ଔଷଧପତ୍ର କିଛି

Digitized by srujanika@gmail.com

ଖାଉନ। ଏମିତି କଲେ କ'ଣ ରୋଗ ଭଲହୋଇଯିବ ?''

ଦୁର୍ଗାମଣି ପୂରାପୂରି ଖିଆପିଆ ଛାଡ଼ିଦେଇଥିଲେ; ଔଷଧ ଖାଉନଥିଲେ। ତାଙ୍କର ଆଉ ବଞ୍ଚିବାର ଆଶା ନଥିଲା। କଣ୍ଠସ୍ୱର ଧୀରେ ଧୀରେ କ୍ଷୀଣ ହୋଇଯାଉଥିଲା। ଖୁବ୍ ପାଖକୁ ନଆସିଲେ ସେ କ'ଣ କହନ୍ତି, କେହି ଜାଣିବା ମୁସ୍କିଲ। ଦିଅରଙ୍କର ହଠାତ୍ ଏପରି ଆତ୍ମୀୟତା ଦେଖି ଦୁର୍ଗାମଣି ଆଶ୍ଚର୍ଯ୍ୟ ହୋଇଗଲେ। ତଥାପି ସେ ଯାହା କ୍ଷୀଣ ସ୍ୱରରେ କହିଲେ, ଅନାଥ ତାହା ଶୁଣି କହିଲେ, ''ତୁମେ ସତକଥା କହୁଛ ଭାଉଜ! ବିଧବା ହୋଇ ଆଉ ବଞ୍ଚି କି ଲାଭ? ତୁମେ ତ ନିଜେ ଦେଖୁଛ— ମୁଁ କେତେ ଚେଷ୍ଟାକରୁଛି— ତଥାପି କେଉଁଠି ହେଲେ ବିବାହ ଠିକ୍ ହୋଇପାରିଲାନାହିଁ। ସମ୍ବନ୍ଧ କ'ଣ ଜୁଟୁନାହିଁ— ସମସ୍ତେ ଜ୍ଞାନଦାର ରୂପ ଦେଖି ମୁହଁ ବୁଲାଇ ଚାଲିଯାଉଛନ୍ତି।''

ଦୁର୍ଗାମଣି କିଛି ନକହି ନୀରବ ରହିଥାନ୍ତି। ଟିକିଏ ରହି ଅନାଥ ପୁଣି କହିଲେ, ''ମଝିଆଁ ଭାଇ ଚାଲିଯିବାପରେ ତୁମେ ମୋ ଉପରେ ବୋଝ। ତୁମେ ମୋ ସଂସାରକୁ ଆସିଛ; ସେଥିନେଇ ଏତେ ଗଣ୍ଡଗୋଳ। ନୀଳକଣ୍ଠ ମୁଖାର୍ଜୀକୁ ତୁମେ ତ ଚିହ୍ନିଛ। ଘର ଘର ବୁଲି ସେ ବଦ୍‌ନାମ କରୁଛି। ତୁମେ ଯେ ଦୋଷାରୋପ କରୁଛ, ସେଥିରେ ଆମକୁ କାହିଁକି ଟାଣୁଛ? ତେବେ ତାଙ୍କର ଅବା ଦୋଷ କ'ଣ? ତୁମେ ତ ଦେଖୁଛ, ଜ୍ଞାନଦାର ବୟସ ବଢ଼ି ବଢ଼ି ଚାଲିଛି। ସହର ବଜାରରେ ଏତେ ଗଣ୍ଡଗୋଳ ନାହିଁ— ଯେତେ ପ୍ରକାର ଗଣ୍ଡଗୋଳ ବାଛ-ବିଚାର ଏଇ ଗାଁଗଣ୍ଡାରେ।''

ଦିଅର ଯେ କ'ଣ କହୁଛନ୍ତି ଦୁର୍ଗାମଣି କିଛି ବୁଝିନପାରି ତାଙ୍କ ମୁହଁକୁ ଚାହିଁଥାନ୍ତି। ଟିକିଏ ଗଳା ଝାଡ଼ି ଅନାଥ ଏଥରକ ଅସଲ କଥା ଆରମ୍ଭ କଲେ, ''ତୁମର ଏ ଅବସ୍ଥାରେ ତୁମେ ତ ଆଉ କୁଆଡ଼େ ଯା'ଆସ କରିପାରିବନାହିଁ— ସେକଥା ମୁଁ ଉଠାଉନାହିଁ। କିନ୍ତୁ କଥା କ'ଣ କି ଜାଣ ଭାଉଜ— ଏଣେ ମୋ ଝିଅ ତ ଘରଯୋଗ୍ୟା ହୋଇଗଲାଣି, ସେଥିପାଇଁ ସବୁଦିଗକୁ ଚାହିଁ ମୋତେ

Digitized by srujanika@gmail.com

କାମ କରିବାକୁ ହେବ। ଜ୍ଞାନଦାକୁ ଏ ସମୟରେ ଆଉ ଏଠି ରଖିହେବନାହିଁ– ଭାରି ହଟନଟ ହେଉଛି ସାହିପଡ଼ିଶାରେ।"

ଦୁର୍ଗାମଣି ଅବାକ୍ ହୋଇ କହିଲେ, "ମୋର ଏ ଅବସ୍ଥାରେ ସେ କୁଆଡ଼େ ଯିବ ?"

–"କାହିଁକି, ତା' ମାମୁଘରକୁ ଚାଲିଯାଉ।"

–"ସେଠାକୁ କିପରି ଯିବ ? ଆଉ ଯାଇ ବା ସେଠାରେ ସେ କ'ଣ କରିବ ?"

ଏଥରକ ଅନାଥ ରୁଷ୍ଟ ହୋଇ କହିଲେ, "ତୁମେ ଯାହା କହୁଛ, ଅନ୍ୟାୟ ଭାଉଜ ! ସବୁବେଳେ ନିଜର ସୁବିଧା ଦେଖିଲେ ଚଳିବ କି ? ଯାହା ଘରେ ଅଛ, ଅସମୟରେ ତାର ଭଲମନ୍ଦ ତ ପୁଣି ଦେଖିବାକୁ ପଡ଼ିବ।"

ଦୁର୍ଗାମଣି କିଛି ଜବାବ ନଦେଇ କେବଳ ଦୀର୍ଘନିଶ୍ୱାସ ପକାଇଲେ। ତାଙ୍କର ମନୋଭାବ ବୁଝିପାରି ଅନାଥ ଟିକିଏ କୋମଳ ସ୍ୱରରେ କହିଲେ, "ଏ ଅବସ୍ଥାରେ ତୁମର କଷ୍ଟ ହେବ, ମୁଁ ବୁଝୁଛି; କିନ୍ତୁ ଉପାୟ କ'ଣ ? ତୁମର ତ ଦୋଷ ଅଛି। ତୁମ ଭାଇ ପାଖକୁ ଚିଠି ଲେଖିଥିଲି। ସେ ସ୍ପଷ୍ଟ ଲେଖିଛନ୍ତି ଯେ ସେ ଜ୍ଞାନଦାର ବିବାହ ପାଇଁ ସବୁ ବ୍ୟବସ୍ଥା କରିଥିଲେ– କିନ୍ତୁ ତୁମେ ଏକ ଅସମ୍ଭବ ଆଶାରେ ଝିଅକୁ ଧରି ଫେରିଆସିଲ, ତା' ନକରିଥିଲେ ଏବେ ଜ୍ଞାନଦା ସ୍ୱଚ୍ଛନ୍ଦରେ . . ." – କହୁ କହୁ ଅନାଥ ଦୃଢ଼ ପଦକ୍ଷେପ ପକାଇ ଚାଲିଗଲେ।

ସ୍ୱଚ୍ଛନ୍ଦରେ କ'ଣ ଯେ ହୋଇଥାନ୍ତା, ସେକଥା ଅନାଥ ସ୍ପଷ୍ଟ କହିଲେ ନାହିଁ। କିନ୍ତୁ ଦୁର୍ଗାମଣି ବୁଝିଗଲେ– ଆଜି ହଠାତ୍ ଜ୍ଞାନଦାକୁ କାହିଁକି ଯେ ଏଠାରୁ ବିଦାୟ ଦେବାକୁ ହେବ, ସେକଥା ଜାଣିପାରିଲେ। କିଛି ଚେଷ୍ଟା ନକରି, ପଇସାଟିଏ ଖରଚ ନକରି ମାଧୁରୀର ବିବାହ ପାଇଁ ସୁଯୋଗ୍ୟ ବରପାତ୍ରର ସନ୍ଧାନ ଯେତେବେଳେ ତାଙ୍କୁ ମିଳିଗଲା, ସେତେବେଳେ ଏ ଲୋଭ ପରିତ୍ୟାଗ କରିବା ଲୋକ ଅନାଥ ନୁହଁନ୍ତି।

ଜକା ଚାଲିଯିବାର କିଛି କ୍ଷଣ ପରେ ଜ୍ଞାନଦା ଘରକୁ ଆସି ଦେଖିଲା ବୋଉର ଆଖି ଦୁଇଟି କାନ୍ଦି କାନ୍ଦି ଫୁଲିଯାଇଛି। ଝିଅକୁ

Digitized by srujanika@gmail.com

ଦେଖି ସେ ତାକୁ କୋଳରେ ଧରି ଭୋ-ଭୋ ହୋଇ କାନ୍ଦିଉଠିଲେ।

ଜ୍ଞାନଦା ତା' ଲୁଗାକାନିରେ ମା'ଙ୍କର ଲୁହଧାର ପୋଛୁ ପୋଛୁ କହିଲା, ''ତୁ କ'ଣ ମତେ ଚିହ୍ନିନାହୁଁ ବୋଉ? ମୋତେ କ'ଣ କେହି ତୋ' ନିକଟରୁ ଛଡ଼େଇ ନେଇପାରିବେ? ଏ ଘର ତ ଆମ ନିଜର – ଏ ଘରେ କକାଙ୍କର ଅଧିକାର ନାହିଁ। ସେ ତୁମକୁ ଖାଇବାକୁ ନ ଦିଅନ୍ତୁ, ସେଥିରେ ଲଜ୍ଜା କ'ଣ? ମୁଁ ଥିବା ପର୍ଯ୍ୟନ୍ତ ତୁମକୁ ଉପବାସରେ ରହିବାକୁ ପଡ଼ିବନାହିଁ ମା'।'' –ଏହା କହି ଜ୍ଞାନଦା ଦୁର୍ଗାମଣିଙ୍କୁ କୋଳକୁ ଆଉଜାଇ ଆଣିଲା। କିଛି ସମୟ ଏମିତି କଟିଯିବା ପରେ ଦୁର୍ଗାମଣି ଝିଅକୋଳରେ ଶୋଇପଡ଼ିଲେ। ଅନେକ ରାତି ପର୍ଯ୍ୟନ୍ତ ଜ୍ଞାନଦା ଶୋଇ ନପାରି କେବଳ ଚିନ୍ତା କରିବାକୁ ଲାଗିଲା – ସେ ତା'ର ମା'ଙ୍କୁ କିପରି ପୋଷିବ?

ଜ୍ଞାନଦାକୁ ମାମୁଘରକୁ ବିଦାୟ କରିବା ପ୍ରସ୍ତାବ ସାନବୋହୂ ସ୍ୱାମୀମୁଖରୁ ଶୁଣିପାରି ଏକାନ୍ତରେ ତାଙ୍କୁ କହିଲେ, ''ତୁମର କ'ଣ ମୁଣ୍ଡ ଖରାପ ହୋଇଛି? ବଡ଼ଭାଉଜଙ୍କ ପରାମର୍ଶରେ ତୁମେ ଏ ଅସମୟରେ ତା'ଠାରୁ ଝିଅକୁ ବିଚ୍ଛିନ୍ନ କରିଦେବାପାଇଁ କହିଦେଇଥାସିଲ? କଂସେଇର ବି ତମଠାରୁ ବେଶୀ ଦୟାମାୟା ଅଛି?''

ସ୍ୱର୍ଣ୍ଣମଞ୍ଜରୀଙ୍କ ପରାମର୍ଶରେ ଅନାଥ ଏପରି ଅଯୌକ୍ତିକ, ଅସମ୍ଭବ କଥା ଦୁର୍ଗାମଣିଙ୍କୁ କହିଦେଇଛନ୍ତି – ତେଣୁ ସ୍ତ୍ରୀଙ୍କ କଥାରେ ଚୁପ୍ ହୋଇ ରହିଲେ।

ଦୁର୍ଗାମଣିଙ୍କ କଥା ବିଚାର କରାଯାଉ। ସେ ମଧ୍ୟ ଏ ଅସମୟରେ ହରିପାଳକୁ ନିଜ ଝିଅ ସହ ପୁଣି ଚାଲିଯାଆନ୍ତେ; କିନ୍ତୁ ସେଠି ତାଙ୍କ ଭାଇର ଶଳା କଥା ମନେପଡ଼ିଗଲେ ସେ ଦିଗକୁ ଆଉ ପାଦେ ଆଗେଇ ଯିବାକୁ ମନ ବଳୁନାହିଁ। ଯେଉଁ ମଣିଷ ଛଅଟି ପିଲାଙ୍କର ପିତା ହୋଇ ଗର୍ଭବତୀ ସ୍ତ୍ରୀକୁ ହତ୍ୟାକରିପାରେ, ତା'କଥା ମନେପଡ଼ିଗଲେ ତାଙ୍କର ହୃତ୍‌କମ୍ପ ଜାତହୁଏ। ସେ ପରଦିନ ଅନାଥକୁ ଡାକିଆଣି ତାଙ୍କର ହାତ ଧରିପକାଇ କାନ୍ଦି କାନ୍ଦି କହିଲେ, ''ଅନାଥ! ତୁମେ ବୟସରେ ମୋ'ଠାରୁ ବଡ଼ ହୋଇଥିଲେ ତମ ପାଦ ଧରିଥାନ୍ତି।

Digitized by srujanika@gmail.com

ତୁମ ଇଚ୍ଛାନୁଯାୟୀ ଝିଅକୁ ମୋର ବିବାହ କରାଇଦିଅ। ତୁମକୁ ବିଶେଷ ଅନୁରୋଧ, ଏ ଅସମୟରେ ମୋ'ଠାରୁ ଝିଅକୁ ଅଲଗା କରିଦେଲେ ମୁଁ ବଞ୍ଚିପାରିବିନାହିଁ।''

ଅନାଥ ହାତ ଛିଞ୍ଚାଡ଼ି ଦେଇ ବିରକ୍ତ ହୋଇ କହିଲେ, ''ପରଲାଗି ମୋର ବି ଜାତି ଚାଲିଯାଉଛି। ମୁଁ ତ ଚେଷ୍ଟାରେ ଖିଲାପ କରୁନାହିଁ– ହେଲେ ଶ୍ମଶାନର ମଡ଼ା ବି ଏ ଶକୁନିକୁ ବାହାହେବାକୁ ରାଜି ନୁହେଁ। ଆଚ୍ଛା ଭାଉଜ ! ତୁମ ହାତର ସୁନାବାଲା ଦୁଇଟି କ'ଣ ହେଲା ?''

–''ସେ ଦୁଇଟି ତୁମ ଭାଇଙ୍କ ଦଶାହ ସମୟରେ ନିରୁପାୟ ହୋଇ ବିକ୍ରିକରିଦେଇଛି।''

ଅନାଥ ବିରକ୍ତ ହୋଇ କହିଲେ, ''ତା'ହେଲେ ମୁଁ କ'ଣ କରିବି ? ଗୋଟିଏ ପଇସା ଦେବନାହିଁ– ତେଣେ ଝିଅକୁ ହାତଛଡ଼ା କରିବନାହିଁ– ଏହାର ଅର୍ଥ ମୋ ମୁଣ୍ଡ ଉପରେ ସବାର ହୋଇ ମୋତେ ବୁଡ଼େଇ ମାରିବ– ଏଇୟା ନା ?'' –ଏହା କହି ସେ ସେଠାରୁ ଚାଲିଗଲେ।

ସେ ଚାଲିଯିବାପରେ ଦୁର୍ଗାମଣି ଜ୍ଞାନଦା ଉପରେ ବିରକ୍ତ ହୋଇ କହିଲେ, ''ସଂଧ୍ୟା-ଦୀପ ଦେବାକୁ ଭୁଲିଗଲୁ କି ମା' ?''

କକା ଓ ବୋଉଙ୍କ ମଧ୍ୟରେ ଯେଉଁ ସବୁ ଆଲୋଚନା ହୋଇଗଲା ଜ୍ଞାନଦା ସେସବୁ ଶୁଣି ନିଜର ଭବିଷ୍ୟତ ନେଇ କେତେ କ'ଣ ଭାବୁଥିଲା। ଅନାଥ ଚାଲିଯିବାପରେ ଦୁର୍ଗାମଣି ରାଗିଯାଇ କହିଲେ, ''ମରଣ ହେଉନି ତୋତେ– ରାଜକୁମାରୀ ଭଳି ଅଭିମାନ କରି ବସିଛୁ ! ଏତେ ଧିକ୍କାରିଲେ ବି ତୋର ମରଣ ହେଉନି। ଯଦୁ ଘୋଷର ଏକମାତ୍ର ପୁଅ ତିନିଦିନ ଜର ଭୋଗି ମରିଗଲା– ଆଉ ତତେ ତ ବର୍ଷେ ହେଲା ଜର ହେଉଛି– ଯମ ତତେ ନେଉନାହିଁ କାହିଁକି ? ତୁ ବୋଲି ମୁହଁ ଦେଖାଉଛୁ, ନଚେତ୍ ଆଉ କେହି ହୋଇଥିଲେ ଏତେ ଅପମାନ ନସହି ଜଳରେ ବୁଡ଼ିମରନ୍ତାଣି। ମୋ ସାମନାରୁ ଉଠ୍ କହୁଛି ଶକୁନି ! ମୁଁ ଟିକେ ଶାନ୍ତିରେ ନିଶ୍ୱାସ ମାରେ। ଦିନରାତି ମୋତେ ଜୋକ ପରି କାମୁଡ଼ିଧରିଛି।'' –ଏହା କହି ଜ୍ଞାନଦାକୁ ଗୋଡ଼ରେ ଠେଲିଦେଇ କଡ଼ ଲେଉଟାଇ ଶୋଇଲେ।

Digitized by srujanika@gmail.com

ବାସ୍ତବିକ ଦୁର୍ଗାମଣିଙ୍କ କଥା ନିରାଟ ସତ। ଆଉ କେଉଁ ଝିଅ ହୋଇଥିଲେ ଏପରି କଟୁବାକ୍ୟ ସହିନପାରି ଆତ୍ମହତ୍ୟା କରିସାରନ୍ତାଣି। ଏମିତି ତ ଅନେକ ଘଟଣା ନିତି ଘଟୁଛି; କିନ୍ତୁ କେଉଁ ନିଗୂଢ଼ ଉଦ୍ଦେଶ୍ୟରେ ଜ୍ଞାନଦାକୁ ମା' ବସୁନ୍ଧରାପରି ସର୍ବଂସହା ହୋଇ ବଞ୍ଚିରହିବାକୁ ହେଉଛି– ଭଗବାନ୍ ଜାଣନ୍ତି। ସେ ନୀରବରେ ଉଠିଯାଇ ଘରକାମରେ ମନଦେଲା। ଏତେ ବଡ଼ ଲାଞ୍ଛନାରେ ବି କିଛି ସମୟ ପରେ ଆତ୍ମବିସ୍ମୃତ ହୋଇ କହିଲା, "ମା! ମୋତେ ମଧ ଆତ୍ମହତ୍ୟା ଜଣା। କେବଳ ତୁ କଷ୍ଟ ପାଇବୁ ବୋଲି ମୁଁ ସେ କାମ କରୁନାହିଁ।"

ଘରେ ପ୍ରଦୀପ ଜାଳି ଓ ଝୁଣା ଦେଲାପରେ ଜ୍ଞାନଦା ତୁଳସୀ ଚଉରା ମୂଳକୁ ସଂଧ୍ୟାବତି ନେଇ ଗଲା। ଗଳାରେ ଲୁଗାକାନି ଦେଇ ଭକ୍ତିଭରେ ମା' ବୃନ୍ଦାବତୀଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି ନିଜର ଆଖିଲୁହରେ ମନର ଦୁଃଖ ଜଣାଇଲା –

ମା' ଦୟାମୟୀ! ତୁମେ ମୋ'ଠାରୁ ମୋ ବାପାଙ୍କୁ ଛଡ଼ାଇନେଇଛ। ଏଥରକ ମୋତେ ଓ ମୋର ମାଆଙ୍କୁ ତାଙ୍କ ପାଖକୁ ପଠାଇଦିଅ। ମା'! ଆମେ ଆଉ ଦୁଃଖ ନିର୍ଯାତନା ସହିପାରୁନାହୁଁ।

## (ନଅ)

ଚୈତ୍ର ମାସ ଆଉ ଅଳ୍ପ କେତେଦିନ ରହିଲା ବୋଲି ସାନବୋହୂ ବାପଘରକୁ ଗଲେନାହିଁ। ମାସ ଶେଷ ହୋଇଯିବାରୁ ସାନଭାଇ ତାଙ୍କୁ ଓ ମାଧୁରୀଙ୍କୁ ନେବାଲାଗି ତାଙ୍କ ଘରେ ଆସି ପହଞ୍ଚିଲା।

ଆଜି ଭଲ ଦିନ– ଖିଆପିଆ ପରେ ଯିବା କଥା। ଅତୁଳ ଘରକୁ ଆସିଥିଲା; ବଡ଼ବୋହୂ ତାଙ୍କୁ ବି ନିମନ୍ତ୍ରଣ କରିଥିଲେ ମଧ୍ୟାହ୍ନ-ଭୋଜନକୁ।

ଅତୁଳ ଓ ମାଧୁରୀର ମାମୁ ଏକାଠି ଖାଇବସିଲେ। ସ୍ୱର୍ଣ୍ଣମଞ୍ଜରୀ ପାଖରେ ବସିଲେ। ପରିବେଷଣ ଦାୟିତ୍ୱ ମାଧୁରୀ ଉପରେ ଥିଲା। ସକାଳବେଳାର ରନ୍ଧାବଢ଼ା ଗୋପନରେ ଜ୍ଞାନଦା କରେ। ଯଦି କେହି

Digitized by srujanika@gmail.com

ପଚାରେ, ତେବେ ସ୍ୱର୍ଣ୍ଣମଞ୍ଜରୀ ଦୃଢ଼ଭାବରେ କହନ୍ତି— କ'ଣ, ଜ୍ଞାନଦାକୁ ରୋଷେଇ କରିବାକୁ ଦିଆଯିବ? ସେ କି କଥା? ସୁତରାଂ ସେ ଆଜି ଅବା ପରିବେଷଣ କେମିତି କରନ୍ତା? ତା'ଛଡ଼ା ଲଜ୍ଜାବୋଧ କରି ସେ କାହା ସାମନାକୁ ଆସେନା।

ଅତୁଳ ସହ ମାଧୁରୀର ବିବାହ ପ୍ରସଙ୍ଗ କାହାରିକୁ ଅଛପା ନଥିଲା। ଏହି ସୁନ୍ଦରୀ ତରୁଣୀଟି ଯେତେବେଳେ ନିଜକୁ ବେଶ୍ ସଜାଇ ସଲଜ୍ଜ ବଦନରେ ପରିବେଷଣ କରିବାକୁ ଆସିଲା, ସେତେବେଳେ ସେ ଅନେକ ଭୁଲ୍ କରିବସିଲା। ତେଣୁ ତାକୁ କାମ ଶିଖାଇବା ଉଦ୍ଦେଶ୍ୟରେ ସ୍ୱର୍ଣ୍ଣମଞ୍ଜରୀ ତାଗିଦ୍ କରି କେତେବେଳେ ପୋଡ଼ାମୁହିଁ ତ କେତେବେଳେ ହତଭାଗୀ ବୋଲି କହିଦେଉଥାନ୍ତି। ବେଳେବେଳେ ସେ ହସି ଥଟ୍ଟାକରି ତାକୁ କାମ ଶିଖାଇବାକୁ ଉପଦେଶ ଦେଉଥିଲେ। ଆଉ ଗୋଟିଏ ଝିଅ (ଜ୍ଞାନଦା) ରନ୍ଧାଘରେ ଥାଇ ମାଧୁରୀକୁ ସବୁ ବଢ଼ାଇଦେଉଥାଏ।

ସ୍ୱର୍ଣ୍ଣମଞ୍ଜରୀ କଥାପ୍ରସଙ୍ଗରେ ଯେତେବେଳେ ପ୍ରକାଶ୍ୟରେ ମାଧୁରୀର ବିବାହ କଥା ଉଠାଇଲେ, ସେତେବେଳେ ମାଧୁରୀ ଲାଜରେ ପଳାଇଯାଇ ରୋଷେଇଘରେ ଲୁଚିଗଲା। ଜ୍ଞାନଦା ପଚାରିଲା, "ଆଉ କ'ଣ ଦରକାର?"

—"ନା ଅପା, ଆଉ କିଛି ଦରକାର ନାହିଁ। ମୁଁ ଆଉ ବାଢ଼ିପାରିବିନାହିଁ।" —ଏହା କହି ଭାତଥାଳିଟା ଦୁମ୍‌କରି ରୋଷେଇଘରେ ଥୋଇଦେଇ ପଳାଇଲା।

ସ୍ୱର୍ଣ୍ଣମଞ୍ଜରୀ ଡାକିଲେ, "ଆରେ ମା', ଲୁଣ ଟିକେ ଦେଇ ଯା!" କିନ୍ତୁ ମାଧୁରୀ ମୋଟେ ଶୁଣିଲାନାହିଁ। ସ୍ୱର୍ଣ୍ଣ ପୁଣି ଥରେ ଡାକିଲେ, "ଆରେ ମାଧୁରୀ, ଲୁଣ ପାଇଁ ପରା ତୋ' ମାମୁ ହାତ ଟେକି ବସିଚନ୍ତି!" ତଥାପି କେହି ଆସିଲେନାହିଁ। ଏଥରକ ସ୍ୱର୍ଣ୍ଣ ରାଗିଯାଇ ବଡ଼ପାଟିରେ ଡାକିଲେ, "ମୋ ଡାକ କ'ଣ କାହାରି କାନକୁ ଶୁଭୁନାହିଁ ନା କ'ଣ? ଏମାନେ କ'ଣ ଖାଇବା ପାଖରୁ ଉଠିଯିବେ?"

ଯେତେବେଳେ ମାଧୁରୀ ଆଉ ଗଲାନାହିଁ, ସେତେବେଳେ ଜ୍ଞାନଦା

Digitized by srujanika@gmail.com

ଭାବିଲା— ଲୁଣ ପରଷିଲେ କାଳେ ଛୁଆଁ ଲାଗିବନାହିଁ— ସେଥିପାଇଁ ବୋଧହୁଏ ବଡ଼ବୋଉ ତାକୁ ଉଦ୍ଦେଶ୍ୟ କରି ଡାକୁଛନ୍ତି। ତେଣୁ ସେ ଯେତେବେଳେ ଲୁଣପାତ୍ର ଧରି ଗଲା, ବଡ଼ବୋହୂ ତାକୁ ଦେଖି ରାଗରେ ଜଳିଉଠି କହିଲେ, "ତୋତେ ଆଣିବାକୁ କିଏ କହିଲା ? ମାଧୁରୀ କାହିଁ ?"

ଜ୍ଞାନଦା କହିଲା, "କେଜାଣି— କୁଆଡ଼େ ଚାଲିଗଲା।"

—"ସେଥିପାଇଁ ତୁ ଚାଲିଆସିଲୁ... ନା ? କେତେଥର ତାଗିଦା କରି କହିଛି ଯେ ତୋତେ ଦେଖିଲେ ପୁରୁଷଲୋକ ତା'ର ସାତପୁରୁଷ ନରକ-ଯନ୍ତ୍ରଣା ଭୋଗେ। ମୋ ଆଗକୁ ତୁ ଆସେନା। ଓଃ... ବୁଝିଲି, ଅତୁଳ ଖାଇବାକୁ ଆସିଛି ବୋଲି ତୁ ତୋ' ରୂପ ଦେଖାଇବାକୁ ଆଗକୁ ବାହାରି ଚାଲିଆସିଲୁ ! ଲୁଣ ଏଇଠି ରଖିଦେଇ ଯା।"

ଲୁଣପାତ୍ର ରଖିଦେଇ ଜ୍ଞାନଦା ଚାଲିଗଲା। ସେ ତ ଶୁଦ୍ଧ ପବିତ୍ର— ସେଥିଲାଗି ଅବିଚଳିତ ଚିତ୍ତରେ ଚାଲିଯାଇପାରିଲା— ମା' ବସୁନ୍ଧରା ଦ୍ୱିଧାକରି ତାକୁ ଗ୍ରହଣ କଲେନାହିଁ। ନଚେତ୍...

ସ୍ୱର୍ଣ୍ଣ ନିଜେ ଉଠି ଲୁଣ ପରଷିଲେ। ଅତୁଳକୁ ଲକ୍ଷ୍ୟ କରି କହିଲେ, "ଆରେ ଅତୁଳ, ତୁ ତ ଯୁବକ। ଖାଇବାକୁ କ'ଣ ଲାଜ କରୁଛୁ କି ? ତଳକୁ କାହିଁକି ମୁହଁ ପୋତିଛୁ, ଶୁଣେ ?"

ମାଧୁରୀର ମାମୁ ପଚାରିଲେ, "ସେ କିଏ କି ?"

ସ୍ୱର୍ଣ୍ଣ ହସିଦେଇ କହିଲେ, "ସେ କିଛି ନୁହେଁ— ତୁମେ ଖାଅ।"

କିନ୍ତୁ ଅତୁଳ ଆନନ୍ଦରେ ଖାଇପାରିଲାନାହିଁ। ତା'ର ହୃଦୟ ବିଷାଦରେ ପରିପୂର୍ଣ୍ଣ ହୋଇଗଲା। ଆଜି ସେ ମାଧୁରୀର ରୂପରେ ସବୁ ଭୁଲିଯାଇଛି, ନିଜକୁ ହଜାଇ ଦେଇଛି— ଏଥିରେ ସନ୍ଦେହ ନାହିଁ। କିନ୍ତୁ ଜ୍ଞାନଦାକୁ ସେ ଜାଣେ। ଏବେ ସୁଦ୍ଧା ଜ୍ଞାନଦା ତାକୁ ଭଲପାଏ କି ଘୃଣାକରେ ଯଦିବା ସଠିକ୍ ଜାଣିନି, କିନ୍ତୁ ଦିନେ ଯେ ଜ୍ଞାନଦା ତାକୁ ପ୍ରାଣାଧିକ ଭଲପାଉଥିଲା— ସେକଥା ସେ ଜାଣେ। କିନ୍ତୁ ସେତେବେଳେ ବି ସେ କେବେହେଲେ ସାମନାକୁ ଆସି ଆପଣାଛାଏଁ ଦେଖାଦେଇନାହିଁ। କିନ୍ତୁ ଆଜି ସେ କିପରି ସାମନାକୁ ଆସିଲା— ପୁଣି ବଡ଼ମାଉସୀଙ୍କ

Digitized by srujanika@gmail.com

ଭର୍ତ୍ସନା ସହିଗଲା – ସେ ତାହା କିପରି ବିଶ୍ୱାସ କରିବ ?

ଉପରବେଳା ସାନବୋହୂ ମାଧୁରୀକୁ ଧରି କଲିକତା ଚାଲିଗଲେ । ଯିବାପୂର୍ବରୁ ମଝିଆବୋହୂଙ୍କୁ ଦେଖାକରି ଗଲେ । ଗଲାବେଳେ ରୋଷେଇଘରେ ଜ୍ଞାନଦା ହାତରେ ଦଶଟଙ୍କା ଦେଇଗଲେ । ସେ ଏପରି ତରତରରେ ବାହାରିଗଲେ ଯେ ଜ୍ଞାନଦାର ପ୍ରଣାମ ଗ୍ରହଣ କରିବା ପର୍ଯ୍ୟନ୍ତ ରହିପାରିଲେନାହିଁ । ଘର ଭିତରେ ସେ କେବଳ ଟିକେ ଜ୍ଞାନଦାକୁ ଭଲପାଉଥିଲେ – ସେ ବି ତାକୁ ଛାଡ଼ି ବାପଘରକୁ ଚାଲିଗଲେ । ସେ ଯେ ବିଶେଷ କିଛି ସାହାଯ୍ୟ କରୁଥିଲେ, ତାହା ନୁହେଁ– ତେବେ ଗୋଟାଏ ଆଶା ଭରସା ଥିଲା । ସେ ଚାଲିଯିବାରୁ ଜ୍ଞାନଦାର ହୃଦୟ ଅନ୍ଧକାରରେ ପରିପୂର୍ଣ୍ଣ ହୋଇଗଲା ।

× × × ×

ବୈଶାଖ ମାସ । ଦିନେ ଅଫିସ୍ ଯାଉଥିବା ସମୟରେ ବଡ଼ବୋହୂ ସ୍ୱର୍ଣ୍ଣମଞ୍ଜରୀ କହିଲେ, "ତୁମେ କ'ଣ କରୁଛ ଅନାଥ ! ମଝିଆଁ ବୋହୂର ଯଦି କିଛି ହୋଇଯାଏ ।"

ଅନାଥ ଆଶ୍ଚର୍ଯ୍ୟ ହୋଇ କହିଲେ, "କ'ଣ କହୁଛ ଭାଉଜ – ମୁଁ ତ କିଛି ଜାଣିନି !"

ସ୍ୱର୍ଣ୍ଣ କହିଲେ, "ଆରେ ନା ନା, ସେ ଏବେ ମରୁନି– ତେବେ ବେଶୀଦିନ ବଞ୍ଚିବନି । ଦଶପନ୍ଦର ଦିନ ଭିତର କଥା । ତା'ପରେ ଜ୍ଞାନଦାର ବିଭାଘର ଆଉ ପୁଣି ବର୍ଷକ ପାଇଁ ହୋଇପାରିବନି । କିନ୍ତୁ ମାଧୁରୀର ବିଭାଘର ଆଗାମୀ ଆଷାଢ଼ ମାସରେ କରିବାକୁ ମନସ୍ଥ କରିଛି । ମୁଁ କାହା କଥା ଶୁଣିବିନି । ଏମିତିକା ପାତ୍ର ଭାଗ୍ୟରେ ଥିଲେ ମିଳେ । ଅତୁଳ ନିଜେ ପସନ୍ଦ କରିଛି । ଏପରି ସୁଯୋଗ ବିଳମ୍ବ କଲେ ଆଉ ମିଳିବନାହିଁ ।"

ଅନାଥ ଭୟ ପାଇ କହିଲେ, "ନା ନା... ମୋର ଆପତ୍ତି ନାହିଁ । ତୁମେ ଘରର କର୍ତ୍ତା, ମୁରବି । ଝିଅ ବିଭାଘର ଯେବେ କରିବ, ମୋର ଆପତ୍ତି ନାହିଁ ।"

ସ୍ୱର୍ଣ୍ଣ ସଗର୍ବେ କହିଲେ, "ତୁମେ ଯେ ଆପତ୍ତି କରିବନାହିଁ

Digitized by srujanika@gmail.com

ମୁଁ ଜାଣେ। ସେଭଳି ଲୋକ ତୁମେ ନୁହଁ। ସେଥିପାଇଁ ମୁଁ ଯେମିତି କହୁଛି, କର; ଆଉ ଡେରି କରିବା ଠିକ୍ ନୁହେଁ। ଯାହାକୁ ପାର ଜ୍ଞାନଦାକୁ ବାହାଦେଇ ଏ ଘରୁ ବିଦାୟ କର। ତା'ପୂର୍ବରୁ ମାଧୁରୀର ବିଭାଘର ହୋଇପାରିବନାହିଁ। ଏବେ ତ ଗାଁରେ ନାନାକଥା ରଟୁଛି, ସେତେବେଳକୁ ତ ପୁଣି ବେଶି ହେବ। ଭଲକରି ବୁଝ— ଏ ତୁମରି ଘରର ମଡ଼ା, ଘରେ ରଖିଲେ ଗନ୍ଧ ହେବ।''

କ'ଣ କରିବେ ଅନାଥ; ଚିନ୍ତିତ ମନରେ ଅଫିସ ଚାଲିଗଲେ। ସେ ଏପରି ଦୁଇ-ଚାରିଟି ପାତ୍ର ଠିକ୍ କରି ଆସିଲେ ଯେ ସେକଥା ପ୍ରକାଶ କରିହେବନାହିଁ।

ସେଦିନ ଉପରବେଳା। ସ୍ୱର୍ଣ୍ଣମଞ୍ଜରୀ ଅନେକ ଦିନ ପରେ ଦୁର୍ଗାମଣିର ଘରେ ପ୍ରବେଶ କରି ପଚାରିଲେ— ''କେମିତି ଅଛୁ ମଝିଆଣୀ?''

ଦୁର୍ଗା କଡ଼ ଲେଉଟାଇ କହିଲେ, ''ଆଶୀର୍ବାଦ କର ଅପା, ମୁଁ ଆଉ ଯେପରି ବେଶୀ ଦିନ ନବଞ୍ଚେ।''

ସହାନୁଭୂତି ଦେଖାଇ ସ୍ୱର୍ଣ୍ଣ କହିଲେ, ''ଭୟ କ'ଣ? ଭଲ ହୋଇଯିବୁନାହିଁ ଯେ!''

ଦୁର୍ଗାମଣି ଚୁପ୍ ରହିଲେ। ସ୍ୱର୍ଣ୍ଣମଞ୍ଜରୀ କହିଚାଲିଲେ— ''ହଁ... କଥା କ'ଣ କି— ଅନାଥ ଗୋଟିଏ ବରପାତ୍ର ଠିକ୍ କରିଛନ୍ତି ଜ୍ଞାନଦା ପାଇଁ। ପିଲାଟିର ବାପ ମା' ନାହାନ୍ତି; ତେଣୁ ସେ ନିଜେ ଆମ ଜ୍ଞାନଦାକୁ ଦେଖିବାକୁ ଆସିବ ବୋଲି ଖବର ପଠେଇଛି। ମା' କାଳୀ ଭରସା... ପିଲାଟି ଜ୍ଞାନଦାକୁ ଦେଖି ପସନ୍ଦ କରୁ— ତା'ହେଲେ ଅନାଥର ଏତେ ଦୌଡ଼ାଦୌଡ଼ି ପରିଶ୍ରମ ସାର୍ଥକ ହେବ। ଯଉତୁକ ଦେବାନେବା ପରକଥା— ମୁଁ କ'ଣ କହୁଥିଲି କି...''

କଥାଟା ଶେଷ ନ ହେଉଣୁ ଦୁର୍ଗାମଣି ବସିପଡ଼ି ଆଗ୍ରହର ସହ କହିଲେ, ''ଅପା, ଆଶୀର୍ବାଦ କର— ଏ ପ୍ରସ୍ତାବ ଯେମିତି ଭାଙ୍ଗି ନଯାଉ— ମୁଁ ଯେମିତି ଝିଅର ବିଭାଘର ଦେଖି ମରେ...''
—କହୁ କହୁ ଆଖି ତାଙ୍କର ଲୁହରେ ଛଳଛଳ ହୋଇଗଲା।

—''ଆଶୀର୍ବାଦ କରୁଛି; ଆଉ ଠାକୁରଙ୍କୁ ମଧ୍ୟ ଦିନରାତି ଡାକୁଛି...

Digitized by srujanika@gmail.com

ପ୍ରଭୁ, ଝିଅଟାକୁ ଯା'ହେଉ କୂଳରେ ଲଗାଇଦିଅ। ତୁମେ ଦେଖିବ ମଝିଆଣୀ, ସବୁ ସଜିଲ ହେଇଯିବ। ତୁମେ ଜ୍ବାଇଁର ମୁହଁ ଦେଖି ତେବେ ଯାଇ. . .''

ଦୁର୍ଗା ଲୁଗାକାନିରେ ଲୁହ ପୋଛିଲେ। ସ୍ୱର୍ଣ୍ଣ ହାଇମାରି କହିଲେ, ''ଅନାଥ ତ ମାସକୁ ଦେଢ଼ଶହ ଦରମା ପାଉଛନ୍ତି। କିପରି ଯେ ସେ ଝିଅକୁ ବିବାହ ଦେବେ, ସେଥିନେଇ ଭାବି ଭାବି ଉଡ଼ ପାଲଟି ଗଲେଣି। ବୋଝ ଉପରେ ନଳିତାବିଡ଼ା ପରି ଜ୍ଞାନଦା. . . ତା'ର ବିଭାଘର ପାଇଁ ସେ ଭାରି ବ୍ୟସ୍ତ। ସବୁକଥା ବୁଝୁଥିବ। କେମିତି ଯେ ଦୁଇ-ଦୁଇଟା କାମ ତୁଲେଇବେ, ସେଥିନେଇ ସେ ଭାରି ଚିନ୍ତିତ। ସେ ତ ତୁମକୁ ମୁହଁଖୋଲି କିଛି କହିପାରୁନାହାନ୍ତି। ସେ କହୁଥିଲେ. . . କ'ଣ କି— ତୁମ ଘରବାଡ଼ି ଭାଗବନ୍ଧା ନଦେଲେ କେମିତି ଜ୍ଞାନଦାର ବିଭାଘର କରିବ? ତୁମକୁ କିଛି କରିବାକୁ ହେବନାହିଁ— ଯାହା କରିବା କଥା ସେ କରିବେ। ତୁମେ କେବଳ ସାଦା କାଗଜରେ ଦସ୍ତଖତ କରିଦିଅ। ଏ ତ କଳିକାଳ— ଏ ଯୁଗରେ କ'ଣ କେହି କାହାକୁ ବିଶ୍ୱାସରେ ଟଙ୍କା-ପଇସା ଦେଉଛନ୍ତି?''

ଦୁର୍ଗାମଣି ସଙ୍ଗେ ସଙ୍ଗେ କହିଲେ, ''ମୁଁ ଅବା ଆଉ କେତେ ଦିନ ବଞ୍ଚିବି? ତୁମେ ମୋତେ ଯାହା କହିବ, ମୁଁ କରିବାକୁ ରାଜି। କେବଳ ତୁମକୁ ରାଣ ଅପା, ମୋ ଝିଅ ଯେପରି ଅକୂଳରେ ଭାସିନଯାଏ।''

—''ସେ କଥା ଚିନ୍ତା କରନା। ବାପା, ଦାଦା, ମା' ଆଉ ବଡ଼ବୋଉ କ'ଣ ଭିନ୍ନ? ସେକଥା ଯଦି ହେଇଥାନ୍ତା, ତେବେ ତା' ଲାଗି ଦିନରାତି ଭାବି ଭାବି ଆମକୁ ନିଦ ନାହିଁ କାହିଁକି? ମୋ ପାଖରେ ଜ୍ଞାନଦା ଯେମିତି ମାଧୁରୀ ମଧ୍ୟ ସେମିତି। ଆରେ ଜ୍ଞାନଦା, ମା' ଆଖିର ଲୁହ ପୋଛିଦେ। ତା'ପାଖରେ ବସି ଟିକେ ବିଞ୍ଚ।''

ଏମିତି ଆଶା ଭରସା ଦେଇ ସେ ଧୀରେ ଧୀରେ ଘରୁ ବାହାରି ଚାଲିଗଲେ।

ଏତେ ଦିନ ପରେ ଆଜି ଦୁର୍ଗାମଣିଙ୍କ ମଳିନ ମୁହଁରେ ଟିକେ ହସ ଫୁଟିଉଠିଲା। ସେ ଜ୍ଞାନଦା ହାତରୁ ପଙ୍ଖା ଟାଣିନେଇ ସ୍ନିଗ୍ଧ

Digitized by srujanika@gmail.com

କଣ୍ଠରେ କହିଲେ, ''ମୋ କୋଳରେ ଟିକେ ଶୋଇପଡ଼ ମା'।'' —ଏହା କହି ଜୋର୍‌କରି ନିଜ କୋଳକୁ ଟାଣିନେଇ କହିଲେ, ''ମୋ'ପରି ହୀନକପାଳୀ ମା' କୋଳରେ ତୁ କାହିଁକି ଜନ୍ମ ହୋଇଥିଲୁ ଲୋ ଝିଅ ? ଖଟି ଖଟି, ଆଉ ଚିନ୍ତା କରି କରି ତୋର ଦେହ କଙ୍କାଳସାର ହୋଇଗଲାଣି। ଆଉ ଯଦିବା ଜନ୍ମ ହେଲୁ, ତେବେ ପୁଅ ହୋଇ ଜନ୍ମ ହେଲୁନାହିଁ କାହିଁକି ?''

ଅନେକ ଦିନ ପରେ ମା'ର ଆଦର ପାଇ ଜ୍ଞାନଦାର ଆଖିରୁ ଧାର ଧାର ଲୁହ ବୋହିଗଲା। ଦୁଃଖସୁଖ ହେଉ ହେଉ ରାତି ହେବାରୁ ମା'ଝିଅ ଶୋଇପଡ଼ିଲେ।

—''ଆରେ ମା', ଦିନ ଆସି କେତେ ହେଲାଣି। ଯା, ମା'! ସାବୁନ ନେଇ ପୋଖରୀରେ ବେଳାବେଳି ଗାଧୋଇ ଆସ। କଥାକୁ ହେଣ୍ଡେଇ ଦେବା ତୋର ଗୋଟିଏ ବଡ଼ ଦୋଷ। ଯା ଶୀଘ୍ର, କହୁଛି।''

ମା' କହିବା ଅନୁସାରେ ଟ୍ରଙ୍କରୁ କେଉଁ ଦିନର ସାଇତା ସାବୁନ ଖଣ୍ଡେ ଧରି ଜ୍ଞାନଦା ଗାଧୋଇବାକୁ ଚାଲିଗଲା। ପଛରୁ ଦୁର୍ଗାମଣି କହୁଥାନ୍ତି— ''ଭଲକରି ଦେହ ରଗଡ଼ି ଘଷି ଗାଧୋଇବୁ ମା'। ଶୀଘ୍ର ଆସିବୁ। ସେମାନେ ଯେ କେତେବେଳେ ଆସିବେ କହିହେଉନାହିଁ।''

ପୋଖରୀରୁ ଫେରିଆସି ଜ୍ଞାନଦା ଦେଖିଲା, ମା' ତାର ବିଛଣାରୁ କଷ୍ଟେମଷ୍ଟେ ଉଠି ଟ୍ରଙ୍କରୁ ଲୁଗା ଓ ବ୍ଲାଉଜ କାଢ଼ି ରଖିଛି। ମୁମୂର୍ଷୁ ମା'ର ଏପରି କାମ ଦେଖି ସେ ଅବାକ୍ ହୋଇଗଲା। ଜ୍ଞାନଦାକୁ ଦେଖି ଦୁର୍ଗାମଣି କହିଲେ, ''ଭୁଲ ହୋଇଗଲା ମା'! ମୁଣ୍ଡ ନକୁଣ୍ଡାଇ ଗାଧୋଇ ଚାଲିଗଲୁ। ହଉ ହେଲା— ଆ ତ, ମୁଁ ତୋର ମୁଣ୍ଡଟା କୁଣ୍ଡାଇଦିଏ।''

ଜ୍ଞାନଦା କହିଲା, ''ତୋର ଏପରି ଅବସ୍ଥାରେ ତୁ ପାରିବୁନାହିଁ ମା'! ତୋ' ଗୋଡ଼ତଳେ ପଡୁଛି... ମୁଁ ନିଜେ ମୋ' ମୁଣ୍ଡ କୁଣ୍ଡାଇପାରିବି।''

ଝିଅ କଥା ଶୁଣି ଦୁର୍ଗାମଣି ଈଷତ୍ ହସି କହିଲେ, ''କ'ଣ କହିଲୁ, ମୁଁ ମୁଣ୍ଡ କୁଣ୍ଡାଇଦେଇପାରିବିନି ? ଜାଣିଛୁ ନା, ମୋ ହାତରେ ମୁଣ୍ଡ କୁଣ୍ଡାଇ ବେଣୀ ପକାଇବାକୁ ଏ ଗାଁର ଝିଅ ବୋହୂ ଆଗ୍ରହରେ

Digitized by srujanika@gmail.com

ରୁଣ୍ଡ ହେଉଥିଲେ . . . କେତେ କାକୁତିମିନତି କରୁଥିଲେ। ଏବେ ବୁଢ଼ୀ ହୋଇଗଲି— ଆ, ଆଉ ଡେରିକରନା।'' —ଏହା କହି ଜୋର୍‌କରି ତାର ମୁଣ୍ଡ କୁଣ୍ଡାଇବସିଲେ। ବୋଧହୁଏ ଦୁର୍ଗାମଣିଙ୍କର ଆଜି ଝିଅର ଶେଷ ମୁଣ୍ଡକୁଣ୍ଡାଇଦେବା। ଗୋଡ଼ରେ ଅଳତା, ମୁଣ୍ଡରେ କୁଙ୍କୁମ, ଓଠରେ ରଙ୍ଗ ଲଗାଇଦେଇ ଦୁର୍ଗାମଣି ଝିଅକୁ ଘଡ଼ିଏ ଚାହିଁ ମନେ ମନେ କହିଲେ— ଝିଅ ମୋର ଟିକିଏ କାଳୀ ହେଲେ କ'ଣ ହେବ, ତା' ରୂପ ସହ କେହି ସରିହେବ କି ? ଝିଅକୁ କିଛି ଗହଣା ପିନ୍ଧାଇ ପାରିନଥିଲେ— ସେଥିପାଇଁ କ୍ଷୋଭ ଜାତ ହେଉଥିଲେ ବି ଆଜି ସେସବୁ ଭୁଲିଗଲେ। ଅଳଙ୍କାରର ଅଭାବ ଆଜିପରିକା ଦିନରେ ତାଙ୍କ ଆଖିରେ ପଡ଼ିଲାନି।

ଝିଅକୁ ବରଘର ଲୋକେ ଦେଖିବାକୁ ଆସିବେ ବୋଲି ସାହିପଡ଼ିଶାରେ ପ୍ରଚାର ହୋଇଗଲା। ନୀଳକଣ୍ଠ ମୁଖାର୍ଜୀ ସପରିବାର ତରଙ୍ଗିଣୀ ସହ ଆସି ପହଞ୍ଚିଲେ। ଜ୍ଞାନଦାକୁ ଦେଖିବାପାଇଁ ବରଘର ଲୋକେ ଡକେଇପଠେଇଲେ। ଜ୍ଞାନଦା ଯାଇ ସେମାନଙ୍କୁ ସମ୍ଭ୍ରମରେ ପ୍ରଣାମ ଜଣାଇଲା। ଅନ୍ୟମାନେ ଲୁଚିଛପି ଉଙ୍କିମାରି ବୋହୂଦେଖା ଦୃଶ୍ୟ ଉପଭୋଗ କରୁଥାନ୍ତି।

ସନ୍ତାନର କୌଣସି ଅସ୍ତ୍ରୋପଚାର ସମୟରେ ମା' ଅନ୍ତରାଳରେ ରହି ଯେପରି ଅସ୍ଥିରତା ଭିତରେ ସମୟ କଟାନ୍ତି, ଆଶାୟିନୀ ଦୁର୍ଗା ସେହିପରି ରୋଗଶଯ୍ୟାରେ ଏକାକିନୀ ବସିରହିଲେ।

ବରପାତ୍ର ଓ ମଧ୍ୟସ୍ଥି ଜଳଖିଆ ଖାଇ କନ୍ୟା ଦେଖି ଫେରିଯିବା ପରେ ତରଙ୍ଗିଣୀ ଦୁର୍ଗାମଣିଙ୍କ ପାଖକୁ ଆସି ନିଶ୍ୱାସ ପକାଇ କହିଲେ, ''କନ୍ୟା ସେମାନଙ୍କର ପସନ୍ଦ ହେଲାନାହିଁ।''

ଦୁର୍ଗା ଆଖିଲୁହ ପୋଛି କିଛି ଉତ୍ତର ନ ଦେଇ ଶୋଇପଡ଼ିଲେ। ତରଙ୍ଗିଣୀ ସହାନୁଭୂତି ପ୍ରକାଶ କରି କହିଲେ, ''ଜ୍ଞାନଦା ତ ଶୁଖି କଙ୍କାଳସାର ହୋଇଯାଇଛି— ଏମିତିକା ଝିଅକୁ କିଏ ଅବା ପସନ୍ଦ କରିବ ? ଆମେ କ'ଣ ପିଲାଦିନୁ ଜ୍ଞାନଦାକୁ ଦେଖିନୁ— କି ସୁନ୍ଦର ସ୍ୱାସ୍ଥ୍ୟ ଓ ମଖଛବି ଥିଲା। ମ୍ୟାଲେରିଆ ଭୋଗି ଭୋଗି ଝିଅର

Digitized by srujanika@gmail.com

ପଞ୍ଜରା ଗଣିହୋଇଯାଉଛି। ଆଉ ଗୋଟିଏ ବର୍ଷ ଅପେକ୍ଷା କର। ଝିଅର ସ୍ୱାସ୍ଥ୍ୟ ଟିକେ ଫେରିପଡୁ... ଦେଖିବ ତେଣିକି ସମସ୍ତେ ପସନ୍ଦ କରିବେ।''

ସେ ତ ଠିକ୍ କଥା— କିନ୍ତୁ ସେ ସୁଯୋଗ କାହିଁ? ଟଙ୍କା ପଇସା କାହିଁ? ସ୍ୱାସ୍ଥ୍ୟ ଫେରିଆସିବାକୁ ଗୋଟାଏ ବର୍ଷ ଅପେକ୍ଷାକଲେ ଏଣେ ତାର ବୟସ ବଢ଼ିଯାଉଛି। ଝିଅକୁ ଆସି ପନ୍ଦର ହେଲା— ଯେତେ ଅଧିକ ବୟସ ହେଉଛି, ତେଣେ ପିତୃପୁରୁଷ ବେଶୀ ନରକରେ ଘାଣ୍ଟି ହେଉଛନ୍ତି। କୁଳୀନ ଘର ଝିଅ ନୁହେଁ, ତେଣୁ ଗାଁ ଲୋକେ କୁଳ ନଷ୍ଟହେଲା ବୋଲି ନାନା କଥା ରଟନା କରିବାକୁ ଲାଗିଛନ୍ତି। ଆଉ ଅପେକ୍ଷା କରିବାକୁ ସମୟ କାହିଁ? ଯେମିତି ହେଉ, ତାର ପଛେ ବାହାଘରବାସି ବୈଧବ୍ୟ ଯୋଗ ଥାଉ, ତା' ଜୀବନରେ ଦାରିଦ୍ର୍ୟ ଓ ଦୁଃଖ ଚିର ସହଚର ହେଉ ପଛକେ, ନିଶ୍ଚୟ ଏଇ ବର୍ଷହିଁ ବିଭା ଦେବାକୁ ହେବ; ନଚେତ୍ ପିତୃପୁରୁଷ ଉଦ୍ଧାର ପାଇବେନାହିଁ। ଜାତି ଧର୍ମ ବି ରକ୍ଷାହେବ।

ସଂଧ୍ୟା ନଇଁଆସିଥାଏ। ଅନ୍ଧକାର ମଧ୍ୟରେ ଜ୍ଞାନଦା ତା'ର ଲାଞ୍ଛିତ କନ୍ୟା ପରିପାଟୀ ଖୋଲିବାକୁ ଘର ଭିତରେ ଚୁପ୍‌ଚାପ୍ ପ୍ରବେଶକରି ଖୋଲିଦେଲା। ଦୁର୍ଗାମଣି ସେମିତି ନିଃଶବ୍ଦରେ ବିଛଣାରେ ପଡ଼ିରହି ଧକେଇ ଧକେଇ କାନ୍ଦୁଥାନ୍ତି। କିଛି ସମୟ ପରେ ଝିଅ ଅପରାଧିନୀପରି ନୀରବରେ ଆସି ମାଆର ପାଦ ପାଖରେ ଶୋଇପଡ଼ିଲା। ମାଆ ଜାଣିଲେ— ଝିଅ ବିମର୍ଷ ମନରେ ଶୋଇଛି। କିଛି କହିଲେନାହିଁ। ସବୁକଥା ଅନୁଭବ କରି ସୁଦ୍ଧା ତାଙ୍କ ହୃଦୟରେ ଆଜି ଲେଶ ମାତ୍ର ଦୟା ସଞ୍ଚରିଲା ନାହିଁ।

## (ଦଶ)

ଦୁର୍ଗାମଣିଙ୍କର ଏବେ ଏମିତି ଅବସ୍ଥା ଯେ, କେତେବେଳେ କ'ଣ ଘଟିବ, କେହି କରିପାରିବେ ନାହିଁ। ସେ ଶାସ୍ତ୍ରପ୍ରବୀଣ ଗାଆଁର ପଣ୍ଡିତଙ୍କଠାରୁ ଶୁଣିଲେ ଯେ ପ୍ରାପ୍ତବୟସ୍କା ଅନୂଢ଼ା କନ୍ୟାର ବିବାହ

Digitized by srujanika@gmail.com

ନହେବା ପର୍ଯ୍ୟନ୍ତ ପିତୃପୁରୁଷଙ୍କ ଅଧୋଗତି ହୁଏ ଏବଂ ସେମାନେ ନରକଗାମୀ ହୁଅନ୍ତି। ତା'ର ହାତରୁ ପାଣି ଓ ନିଆଁ ନେଲେ ଅସ୍ପୃଶ୍ୟତା ଦୋଷ ଲାଗେ। —ଏହି କଥା ଭାବି ଭାବି ସେ ଦିନକୁ ଦିନ ଅଧିକ କ୍ଷୀଣ ହେବାକୁ ଲାଗିଲେ।

ସ୍ନେହମୟୀ ଜନନୀ ସେ। ଯେଉଁ ଝିଅକୁ ଦେଖିଲାକ୍ଷଣି ସ୍ନେହର ଅମିୟ ଧାରା ଧରିପଡୁଥିଲା, ସେହି ଝିଅକୁ ଦେଖି ଏବେ ସେ ରାଗରେ ଜଳିଯାଉଛନ୍ତି। ଝିଅକୁ ପସନ୍ଦ ନକରି ବରଘର ଚାଲିଯିବା, ପରେ ଝିଅପ୍ରତି ତାଙ୍କ ହୃଦୟ ପୂରାପୂରି ପାଷାଣ ହୋଇଗଲା— ତା' ପ୍ରତି ତିଳାର୍ଦ୍ଧ ମାୟାମମତା ରହିଲା ନାହିଁ।

ସେ ଅନାଥଙ୍କୁ ଡାକି କହିଲେ, "ଅନାଥ! ମୁଁ ଶୁଣିବାକୁ ପାଉଛି ଆର ପଡ଼ାର ଗୋପାଳ ଭଟ୍ଟାଚାର୍ଯ୍ୟ ଆଉ ଥରେ କାଲେ ବିବାହ କରିବ। ମୋ ମୃତ୍ୟୁ ପୂର୍ବରୁ ସେ ପ୍ରସ୍ତାବ ନେଇ ଶେଷଥରପାଇଁ ଚେଷ୍ଟାକର।"

ଏ କଥାଟା ସମ୍ପୂର୍ଣ୍ଣ ମିଛ ବୋଲି ଉଡ଼ାଇ ଦେଇ ଅନାଥ କହିଲେ, "କିଏ କହିଲା ଗୋପାଳ ଭଟ୍ଟାଚାର୍ଯ୍ୟ ଆଉ ଥରେ ବିବାହ କରିବେ? ମିଛକଥା। ତୁମ ସାଙ୍ଗରେ କିଏ ପରିହାସ କରିଚି।

ଦୁର୍ଗାମଣି ଦୀର୍ଘନିଶ୍ୱାସ ପକାଇ କହିଲେ, "ମୋ ସାଙ୍ଗରେ କିଏ ପୁଣି ଥଟ୍ଟା କରିବ? ସେ ତ ଛୁଆପିଲାର ବାପ। ତା' ବୟସ କେତେ, କିଏ ବୁଝୁଚି? ତା' ବୟସର ଅନେକ ଲୋକ ତ ବିବାହ କରନ୍ତି। ତୁମକୁ ମିନତି କରୁଛି, ଥରେ ଯାଇ ବୁଝାବୁଝି କର। ଜୀବଦ୍ଦଶାରେ ତ କିଛି ପାଇଲି ନାହିଁ— ମୃତ୍ୟୁ ପରେ କ'ଣ ମୁହଁରେ ମୁଖାଗ୍ନି ପାଇବିନାହିଁ ନା କ'ଣ"

ଦିବାରାତି ଦୁର୍ଗାମଣିଙ୍କର ଏ ବିଷୟ ବଡ଼ ଚିନ୍ତାରେ ପରିଣତ ହୋଇଛି— ମୃତ୍ୟୁ ପରେ କ'ଣ ମୁହଁରେ ମୁଖାଗ୍ନି ଦେବାକୁ କେହି ସମର୍ଥ ହେବେନାହିଁ? ଏତେ କଷ୍ଟ ସହି ଦଶମାସ ଗର୍ଭରେ ଧରି ଲାଳନପାଳନ କରି ଝିଅଟିକୁ ବଡ଼ କରିବାପରେ ଶେଷ ମୁହୂର୍ତ୍ତରେ କ'ଣ ସବୁ ନିଷ୍ଫଳ ହୋଇଯିବ? ଯେଉଁ ଝିଅ ମୁହଁରେ ମୁଖାଗ୍ନି

Digitized by srujanika@gmail.com

ଦେବାକୁ ଅଯୋଗ୍ୟା, ସେ ଝିଅ କାହିଁକି ଜନ୍ମ ହୋଇଥିଲା ?

ଉଦ୍‌ବିଗ୍ନର ସହ ଦୁର୍ଗାମଣି କହିଲେ, ‘‘ମୋର ଏହି ଶେଷ ସମୟରେ ତୁମେ ଜ୍ଞାନଦାକୁ ଯାହାକୁ ପାଉଛ ତା’ ହାତରେ ସମର୍ପିଦିଅ । ତୁମକୁ ଆଶୀର୍ବାଦ କରୁଛି, ତୁମେ ସୁଖୀ ହୁଅ, ଅନାଥ !’’

ଅନାଥ କମ୍ ଚେଷ୍ଟା କରିନାହାନ୍ତି । ସେ ସେହିଦିନ ଯାଇ ଗୋପାଳ ଭଟ୍ଟାଚାର୍ଯ୍ୟଙ୍କ ସହ କଥାପ୍ରସଙ୍ଗରେ ବୁଝିଲେ କଥାଟା ପୂରାପୂରି ସତ୍ୟ – ଭଟ୍ଟାଚାର୍ଯ୍ୟ ପୁଣି ଥରେ ବିବାହ କରିବେ । ସେଥିପାଇଁ ଝିଅ ପକ୍ଷର କେତେକ ଅଭିଭାବକ ଆସି ବୁଝାବୁଝି କରିଗଲେଣି ।

ଯାହାହେଉ ବୁଝାବୁଝି ସରିଲା । ଅନେକ କଷ୍ଟ ସ୍ୱୀକାର କଲାପରେ ବିବାହ ସ୍ଥିର ହେଲା । ଭଟ୍ଟାଚାର୍ଯ୍ୟଙ୍କୁ କନ୍ୟାଦାନ କରାଯିବା କଥା ଯେ ଶୁଣିଲା ସେ ଛି-ଛାକର କଲା; କିନ୍ତୁ ଜନନୀ ଦୁର୍ଗାମଣି ସେସବୁ ପ୍ରତି କର୍ଣ୍ଣପାତ କଲେନାହିଁ । ସେ ବର୍ତ୍ତମାନ ଆରପୁରର ଯାତ୍ରୀ; ତେଣୁ ତାଙ୍କର ଯାତ୍ରା ଯେପରି ସୁଫଳ ହେବ, ଶାସ୍ତ୍ର ମୁତାବକ ହେବା ଉଚିତ ମଣି, ଯେପରି ହେଉ, ବିବାହ କରିଦେବେ ବୋଲି ସିଦ୍ଧାନ୍ତ କରିନେଲେ ।

ଦୁଃଖର ଇତି ହେଲାନାହିଁ । ଗୋପାଳ ଭଟ୍ଟାଚାର୍ଯ୍ୟ କହିପଠାଇଲେ କନ୍ୟାକୁ ଦେଖି ପସନ୍ଦ ହେଲେହିଁ ବିବାହ କରିବେ ! ଅଜବ କଥା – ଏ ବୟସରେ ବିବାହ କରିବାର ସଉକ ଯାହାର ଅଛି, ସେ ଝିଅ ଦେଖି ପସନ୍ଦ କରି ବିବାହ କରିବ !

ନିଦାଘ ପରେ ବର୍ଷା ପାଣି ପାଇ ଶୁଖିଯାଇଥିବା ଗଛ ପଲ୍ଲବିତ ହୋଇଉଠେ । ଠିକ୍ ସେମିତି ନୂତନ ଆଶାରେ ଦୁର୍ଗାମଣିଙ୍କର ଲିଭିଆସୁଥିବା ଆଶା ପୁଣି ଉଜ୍ଜୀବିତ ହେବାକୁ ଲାଗିଲା । ସେ ଅନାଥର ହାତ ଧରିପକାଇ କାକୁତିମିନତି ହୋଇ କହିଲେ – ‘‘ଏଇ କାମଟି ତୁମେ ଶେଷକରିଦିଅ ସୁରୁଖୁରୁରେ । ହତଭାଗୀର ହାତରୁ ମୁଖାଗ୍ନି ମୁଁ ଯେପରି ଶେଷ ସମୟରେ ପାଏ ! ଏହି ପ୍ରସ୍ତାବଟା ଯେପରି ଭାଙ୍ଗିନଯାଏ । ସେମାନେ ଆଜି କନ୍ୟା ଦେଖିବାକୁ ଆସନ୍ତୁ, ତୁମେ ଯାଇ ସେମାନଙ୍କୁ କହିଦେଇଆସ ।’’

Digitized by srujanika@gmail.com

ବିଭାଘର ନହେଲେ ସେ ମାଆର ମୁଖାଗ୍ନି ଦେଇପାରିବ ନାହିଁ କି ଶୁଦ୍ଧିକ୍ରିୟା ବି କରିପାରିବନାହିଁ— ଏକଥା ଶାସ୍ତ୍ରରେ ଲେଖାଅଛି ଶୁଣି ଜ୍ଞାନଦା ପାନାହାର ଭୁଲି ପୂରାପୂରି ଚିନ୍ତାମଗ୍ନ ହୋଇଗଲା। ସେ ମଧ୍ୟ ଝିଅ। ତା' ଅନ୍ତର ମଧ୍ୟରେ ଅବିରତ ଚିତାଗ୍ନି ହୁ-ହୁ ହୋଇ ଜଳିବାକୁ ଆରମ୍ଭକଲା।

ଉପରବେଳା ସେ ରୋଷେଇଘରେ ମା'ପାଇଁ ପଥ୍ୟ ତିଆରି କରୁଥିଲା। ତାକୁ ପୁଣି ଥରେ ରୂପର ପରୀକ୍ଷା ଦେବାକୁ ଡାକରା ଆସିଲା।

ସ୍ୱର୍ଣ୍ଣମଞ୍ଜରୀ ନିଜେ ରୋଷେଇଘରକୁ ଦୌଡ଼ିଆସି କହିଲେ, "ଆରେ ଜ୍ଞାନଦା! ଶୀଘ୍ର ଭଲ ଲୁଗାଖଣ୍ଡେ ପିନ୍ଧିପକା। ସେମାନେ ବୋହୂ ଦେଖିବାକୁ ଆସିଗଲେଣି। ତୁ ଶୀଘ୍ର ପିନ୍ଧିକରି ଆସ। ସେମାନେ ତୋତେ ଏମିତି ଦେଖିବାକୁ ଚାହାନ୍ତି— କୌଣସି ସାଜସଜ୍ଜା ଦରକାର ନାହିଁ।" —ଏହା କହି ସେ ଦ୍ରୁତ ପଦକ୍ଷେପରେ ଚାଲିଗଲେ।

ଅନାଥ ଅଫିସ୍‌ରୁ ଫେରିନାହାନ୍ତି— ତେଣୁ ଅତିଥିଚର୍ଚ୍ଚାର ଭାର ସବୁ ସ୍ୱର୍ଣ୍ଣଙ୍କ ଉପରେ। କନ୍ୟା ଦେଖିବାକୁ ନିଜେ ବରପାତ୍ର ଗୋପାଳ ଭଟ୍ଟାଚାର୍ଯ୍ୟ ଓ ତାଙ୍କର ଦୂର ସମ୍ପର୍କୀୟ ଭିଣୋଇ ଆସିଛନ୍ତି। ଯୁବକମାନେ କନ୍ୟାକୁ ଭଲ ଭାବରେ ଦେଖି ପସନ୍ଦ କରିପାରନ୍ତି ବୋଲି ଗୋପାଳ ଚାଲାକି କରି ତାଙ୍କ ଭଣଜାକୁ ସାଥିରେ ଆଣିଥାନ୍ତି। ତାଙ୍କରି ପରାମର୍ଶରେ କନ୍ୟା ଯେଉଁ ବେଶରେ ବର୍ତ୍ତମାନ ଅଛନ୍ତି, ସେହି ବେଶରେ ଦେଖିବାକୁ ବରାଦ ଦିଆଗଲା। କାରଣ ସାଜସଜ୍ଜା ଅସୁନ୍ଦରକୁ ସୁନ୍ଦର କରିଥାଏ— ପ୍ରତାରିତ ହେବାର ଭୟ ମଧ୍ୟ ଅଛି।

ସେହି ଯୁବକଟି ସଂଧ୍ୟା ଛ'ଟା ଟ୍ରେନ୍‌ରେ କଲିକତା ଫେରିଯିବ ବୋଲି, ସେ ଶୀଘ୍ର କନ୍ୟାଦେଖା କାମ ସାରିଦେବାକୁ କହିଲେ। ତେଣୁ ଜ୍ଞାନଦାକୁ ଶୀଘ୍ର ଆସିବାକୁ ସ୍ୱର୍ଣ୍ଣ ବରାଦ କରୁଥାନ୍ତି; କିନ୍ତୁ ଜ୍ଞାନଦା ଆସୁ ନଥାଏ। ଡେରି ହୋଇଗଲା। ଲୁଗା ଖଣ୍ଡିଏ ପିନ୍ଧି ଆସିବାକୁ କାହିଁକି ଯେ ଏତେ ଡେରି ହେଉଛି ବୋଲି ଦାସୀ ଯେତେବେଳେ ଘରଭିତରକୁ ଯାଇଁ ଜ୍ଞାନଦାକୁ ଧରିଆଣିଲା, ସ୍ୱର୍ଣ୍ଣ ଦେଖିଲେ, ଜ୍ଞାନଦା

Digitized by srujanika@gmail.com

ବେଶ ପରିପାଟୀ ହୋଇଛି। ସେ ଅନୁଚ୍ଚ ଗଳାରେ କହିଲେ, ''କିଏ ତୋତେ ଏସବୁ ପିନ୍ଧିବାକୁ କହିଲା ? ଯା' ଶୀଘ୍ର କେବଳ ଲୁଗା ଖଣ୍ଡିଏ ପିନ୍ଧିକରି ଆସିବୁ।''

ଫୁସ୍‌ଫାସ୍ କଥା ଦୂରକୁ ଶୁଭେ। ଘର ଭିତରର କଥା ଶୁଣିପାରି ଗୋପାଳର ଭଣଜା ଉଙ୍କିମାରି ସବୁ ଦେଖି କହିଲା, ''ହଉ ହେଲା, ସେ ଯେମିତି ପିନ୍ଧିଛନ୍ତି ସେମିତି ଆସନ୍ତୁ। ମୁଁ ଆଉ ଡେରିଯାଏଁ ରହିପାରିବିନାହିଁ।''

କନ୍ୟାକୁ ଯେତେବେଳେ ସେମାନଙ୍କ ଆଗକୁ ଅଣାଗଲା, ଯୁବକଟି କନ୍ୟାର ଅପରୂପ ସାଜସଜ୍ଜା ଦେଖି ବହୁତ କଷ୍ଟରେ ହସ ଚାପି ଠିଆହେଲା ଏବଂ ଆସନ୍ତା କାଲି ସେମାନଙ୍କ ସିଦ୍ଧାନ୍ତ ଜଣାଇବେ କହି ଉଠି ଚାଲିଗଲେ। ଜଳଯୋଗର ବନ୍ଦୋବସ୍ତ କରାଯାଇଥିଲା; କିନ୍ତୁ ଟ୍ରେନ୍ ଧରିପାରିବନାହିଁ ବୋଲି ସେମାନେ ନଖାଇ ଚାଲିଗଲେ।

ଆସନ୍ତା କାଲି ଖବର ଦେବାର ଅର୍ଥ ଯେ କ'ଣ, ତାହା ଜଣାଗଲା। ସ୍ୱର୍ଣ୍ଣମଞ୍ଜରୀ ବଡ଼ପାଟିରେ ଝାନନ୍ଦାକୁ ଗାଳିମନ୍ଦ କରି ସାରା ଗାଁଟାକୁ ହୁଲ୍ଲୁର କରିଦେଲେ। ମଝିଆବୋହୂଙ୍କ ଅବସ୍ଥା ଭଲ ନଥିଲା ବୋଲି ସାଇପଡ଼ିଶାରୁ କେତେକ ସ୍ତ୍ରୀଲୋକ ଛୁଟିଆସିଲେ। ହଠାତ୍ ଅତୁଳ ମଧ୍ୟ କୁଆଡୁ ଆସି ପହଞ୍ଚିଗଲା। ତା'ର ବୋଧହୁଏ ଛ'ଟା ଟ୍ରେନ୍‌ରେ କଲିକତା ଯିବାର କଥା ଥିଲା। ପାଟି ଶୁଣି କିଛି ଅଘଟଣ ଘଟିଗଲା ବୋଲି ଭାବି ସେଠି ଆସି ପହଞ୍ଚିଲା।

ଅତୁଳକୁ ଦେଖି ସ୍ୱର୍ଣ୍ଣମଞ୍ଜରୀଙ୍କ ରାଗ ପଞ୍ଚମରେ ପହଞ୍ଚିଗଲା। ଝାନନ୍ଦା ଲାଜ ଓ ଅପମାନରେ ଦୋଷୀ ଭଳି ମୁହଁ ତଳକୁ କରି ଠିଆ ରହିଥାଏ। ବଡ଼ବୋଉ ରାଗରେ ତା' ମୁହଁ ଉପରକୁ ଟେକି ଅତୁଳକୁ ଦେଖାଇ କହିଲେ, ''ଦେଖ ଅତୁଳ, ହତଭାଗୀ ପୋଡ଼ାମୁହାଁର ମାଙ୍କଡ଼ ମୁହଁ ଦେଖ।''

ପ୍ରକୃତରେ ଝାନନ୍ଦାର ମୁହଁକୁ ଚାହିଁଲେ ହସ ଦମନ କରିହେବନାହିଁ। ସେ ନିଜର ରୂପ ସଜାଇବାକୁ ଯାଇ ଓଠର ରଙ୍ଗ ଗାଲରେ, ଗାଲର ରଙ୍ଗ ଓଠତଳେ ମାରିଦେଇଛି। ଅନ୍ଧକାର ଭିତରେ ନିଜ ହାତରେ

Digitized by srujanika@gmail.com

ମୁଣ୍ଡରେ କୁଙ୍କୁମ ମାରିବାକୁଯାଇ କପାଳ ମଝିରେ ଲଗାଇଛି। ନୁଖୁରା ମୁଣ୍ଡରେ ଟରବର ହୋଇ ପୂଜାଏ ତେଲ ଢାଳି ମୁଣ୍ଡ କୁଣ୍ଡାଇ ବାନ୍ଧିଥାଏ ଯେ ବାଳରୁ ତେଲ ଟୋପା ଟୋପା ହୋଇ ଝରିପଡୁଥାଏ। ତାର ଏ ରୂପ ଓ ସାଜସଜ୍ଜା ଦେଖି ପାଖରେ ଥିବା ଦୁଇଚାରିଟା ଝିଅ ଖିଲିଖିଲି ହସିଉଠିଲେ। ଜଣକର କୋଳରେ ପୁଅଟିଏ ଥିଲା। ସେ ପୁଅକୁ କହିଲା– ଝିଅ କି ବେଶ ସଜେଇଚି ଦେଖ। ତା'କଥା ଶୁଣି ସମସ୍ତେ ଏକାବେଳକେ ହସିଉଠିଲେ।

କିନ୍ତୁ ଅତୁଳର ଅନ୍ତର ଭିତରଟା ଏମାନଙ୍କ ହସରୋଳରେ ସତେ ଯେପରି ବିଦାରିତ ହେଉଥାଏ। ଅନେକ ଦିନ ସେ ଜ୍ଞାନଦାକୁ ଦେଖିଚି, ହେଲେ ଏମିତି ସ୍ପଷ୍ଟ ଦିବାଲୋକରେ ସେ କେବେ ଜ୍ଞାନଦାର ମୁହଁକୁ ଚାହିଁପାରିନଥିଲା। ଶୁଣିବାକୁ ପାଇଥିଲା– ରୋଗରେ ପଡ଼ି ଜ୍ଞାନଦାର ରୂପ ବିକୃତ ହୋଇଯାଇଛି। କିନ୍ତୁ ସେ ବିକୃତି ଯେ ଏପରି ହୋଇପାରେ, କଳ୍ପନାରେ ସୁଦ୍ଧା ସେ ଭାବିପାରିଲାନାହିଁ। ଯେତେବେଳେ ସେ ସାଙ୍ଘାତିକ ରୋଗରେ ଶଯ୍ୟାଶାୟୀ, ସେତିକିବେଳେ ସେ ଏହି ଜ୍ଞାନଦାର ମୁଖମଣ୍ଡଳକୁ ଦେଖି ମୁଗ୍ଧ ହୋଇଥିଲା– ଆଖିର ନିଶାରେ ନୁହେଁ, କୃତଜ୍ଞତାପାଇଁ ନୁହେଁ, ଅକପଟ ଭାବରେ ମନପ୍ରାଣ ଦେଇ ତାକୁ ଭଲପାଇବସିଥିଲା। ଆଜି ଅକସ୍ମାତ୍ ଯେତେବେଳେ ତାର ମୁଖମଣ୍ଡଳଟିକୁ ସାମନାସାମନି ଦେଖିପାରିଲା, ଯାହାକୁ କି ଯମରାଜା ଶେଷ ନୋଟିସ ଦେଇସାରିଲେଣି, ସେହି ମୁଖମଣ୍ଡଳ ଦେଖି ସେ ଆତ୍ମବିସ୍ମୃତ ହୋଇପଡ଼ିଲା। ସେ କ'ଣ କହିବାକୁ ଯାଉଥିଲା, ହଠାତ୍ ସ୍ୱର୍ଣ୍ଣମଞ୍ଜରୀଙ୍କ ବଡ଼ପାଟି ଶୁଣି ତାହା ବନ୍ଦହୋଇଗଲା– "ଝିଅର ବୁଦ୍ଧି ଦେଖ! ବୁଢ଼ା ବର, ଚିତ୍ରଗୁପ୍ତ ପାଞ୍ଜି ପୋଛିଲାଣି, ତା'ପାଇଁ ଝିଅ ଆମର କେତେ ସଜେଇ ହେଇ ଆସିଲା, ଦେଖ! କିନ୍ତୁ ଭୁଲେଇପାରିଲୁ କି? ମୁହଁରେ ଲାତ ମାରି ସେମାନେ ଚାଲିଗଲେ।"

କେହି ଜଣେ ସ୍ତ୍ରୀଲୋକ କହିଲା, "ଝିଅକୁ କିଏ ଏମିତି ସଜେଇ ଦେଇଥିଲା? ବୁଢ଼ା ଗୋପାଳ ଭଟ୍ଟାଚାର୍ଯ୍ୟର ପସନ୍ଦ ହେଲାନାହିଁ?"

ସ୍ୱର୍ଣ୍ଣ ତାକୁ ଚାହିଁ ତାଚ୍ଛଲ୍ୟ ଭାବରେ କହିଲେ, "କିଏ ଆଉ

Digitized by srujanika@gmail.com

ସଜାଇଦେବ ? ନିଜ ମନକୁ ମନ ରାଣୀ ସଜେଇ ହେଉଛନ୍ତି । ମା' ତା'ର ମୃତ୍ୟୁଶଯ୍ୟାରେ ଅଚେତ— ସେ ଅବା କ'ଣ କରିବ ? ତାକୁ କହିଲି, ''ମା ଜ୍ଞାନଦା, ଖଣ୍ଡିଏ ଲୁଗା ଶୀଘ୍ର ପିନ୍ଧିକରି ଆସ । ମୋ କଥା ରାଣୀଙ୍କୁ ପସନ୍ଦ ହେଲାନି । ଭାବିଲେ, ଭଲକରି ସଜେଇ ହୋଇ ନଗଲେ ବୁଢ଼ା ବର ନାପସନ୍ଦ କରିବ । ସଜେଇ ହେଇ ଆସିଲେ ଏହି ଛପା ଶାଢ଼ିଖଣ୍ଡିକ ଆଉ ଅତୁଳ ଦେଇଥିବା ଦୁଇମୁଠା କାଚ୍‌ଚୁଡ଼ି ପିନ୍ଧି । ସେ ଚୁଡ଼ିକୁ ଦିନକୁ ଦଶଥର ଓହ୍ଲାଉଛି ତ ଦଶଥର ପିନ୍ଧୁଛି । ପୋଡ଼ାମୁହାଁ ସେ ଚୁଡ଼ି ହାତରେ ଲଗାଇ ବାହାରିବାକୁ ତତେ ଲାଜ ଲାଗୁନି ? ମୋ ସାମନାରୁ ଯା' କହୁଚି ।''

ଜ୍ଞାନଦା ଏପରି ନିର୍ଲଜ୍ଜ ପଣକୁ ସମସ୍ତେ ଛି-ଛି କରି ଯେଝା ଘରକୁ ଚାଲିଗଲେ । କିନ୍ତୁ ଯାହାଙ୍କୁ ଏ ଦୁନିଆର କିଛି ଅଛପା ନାହିଁ, ସେହି ଅନ୍ତର୍ଯାମୀ କେବଳ ଏ ଦୁଃଖିନୀର ଦୁଃଖରେ ଅଶ୍ରୁସଂବରଣ କରିପାରିଲେନାହିଁ । ସେ କେବଳ ଜାଣିଲେ— ଯେଉଁ ଝିଅଟି ଜନ୍ମରୁ ଲଜ୍ଜାବଶତଃ ମୁହଁ ଟେକିପାରେନା, ସେ କେମିତି ଆଜି ସବୁ ଲାଜ-ସରମକୁ ଜଳାଞ୍ଜଳି ଦେଇ ନିଜର କଙ୍କାଳସାର ଶ୍ରୀହୀନ ଶରୀର ଓ ମୁଖମଣ୍ଡଳଟିକୁ ବେଶଭୂଷାରେ ସଜାଇ ଜଣେ ବୃଦ୍ଧର ପାଦତଳେ ନିଜକୁ ବିକ୍ରି କରିବାକୁ ଅଗ୍ରସର ହୋଇପାରିଲା । ସେ ତ ବିଫଳମନୋରଥ ହୋଇ ନିଜର ଜୀବନକୁ ଅସାର ମନେକରିଥିଲା । ତା'ପରେ ଆଜି ସମସ୍ତେ ତାକୁ ଛି-ଛାକର କରି ଚାଲିଗଲେ; କେହି ତା' ପ୍ରତି ଟିକିଏ ସହାନୁଭୂତି ଦେଖାଇଲେନାହିଁ । କିନ୍ତୁ ଯିଏ ସବୁର ବିଚାରକ ସେ ଆଜି ଏହି ଚହଭାଗୀ ବାଳିକାର ସମସ୍ତ ଅପରାଧ ନିଜେ ବିଚାର କରିବାକୁ ଆଗେଇ ଆସିଲେ ।

ଜ୍ଞାନଦା ଉଠି ଠିଆହେଲା । ସେ କେବେହେଲେ ଅନ୍ୟ ପାଖରେ ନିଜର ଦୁଃଖ ପ୍ରକାଶ କରିନାହିଁ । କିନ୍ତୁ ଆଜି ଅତୁଳକୁ ଦେଖି ତାର ଆଖିରୁ ଧାର ଧାର ଲୁହ ବୋହିବାକୁ ଲାଗିଲା । ସେ ପଦେ ହେଲେ କଥା କହିଲାନାହିଁ— ନୀରବରେ ଆଖି ପୋଛି ପୋଛି ଚାଲିଗଲା ।

କଲିକତା ଯିବାପାଇଁ ରାତିରେ ଆଉ ଟ୍ରେନ୍ ନାହିଁ ବୋଲି ବାଧହୋଇ

Digitized by srujanika@gmail.com

ଅତୁଳ ଘରକୁ ଫେରିଗଲା । ତାର ସାନ ମାଉସୀ ତାଙ୍କ ବାପଘରକୁ ଯିବା ସମୟରେ କହିଯାଇଥିବା କଥାଗୁଡ଼ିକ ଏବେ ତା'ର ମନେପଡ଼ିଯାଉଥାଏ । ସେ ଅତୁଳକୁ ନିଭୃତକୁ ଡାକି କହିଥିଲେ, ''ଅତୁଳ ରେ, ସେ ହୀରାକୁ ଫିଙ୍ଗି କାଚକୁ କାନିରେ ବାନ୍ଧିରଖେ, ତାକୁ ପଛରେ ବହୁତ ଅନୁତାପ କରିବାକୁ ପଡ଼େ ।'' ମାଉସୀଙ୍କର ସେ କଥା ତାର ସେଦିନ ମନେ ନଥିଲା; ଆଉ ବି ସ୍ପଷ୍ଟ କରି ବୁଝିନଥିଲା । କିନ୍ତୁ ଆଜି ଗଭୀର ଭାବରେ ଚିନ୍ତାକରି ଦେଖିଲା, କଥାଟା ତାକୁହିଁ ଲକ୍ଷ୍ୟ କରି କୁହାଯାଇଛି । ଲଜ୍ଜାହୀନା ବୋଲି ଆଜି ଯାହାକୁ ସମସ୍ତେ ଛି-ଛାକର କରି ଲାଞ୍ଛନା ଦେଉଛନ୍ତି, ତାର ଲଜ୍ଜା-ସରମର ସୀମାରେଖାଟା ଯେ କେଉଁଠି, ଆଜି ତାର ସେସବୁ ସ୍ମରଣହେଲା ।

ସେଦିନ ବଡ଼ିଭୋର୍‌ରୁ ଅନାଥ ଅତୁଳ ଘରକୁ ଯାଇ କହିଲେ, ''ମଝିଆଁ ବୋହୂଙ୍କୁ ଦାହ କରିବାକୁ ହେବ । ରାତିରେ ସେ ଆରପାରିକୁ ଚାଲିଗଲେ ।''

ଏ ଦୁଃସମ୍ବାଦ ଶୁଣି ଅତୁଳ ପୂରାପୂରି ଭାଙ୍ଗିପଡ଼ିଲା । ''ହଉ, ଚାଲ ମଉସା !'' —କହି ସେ ସଙ୍ଗେ ସଙ୍ଗେ ବାହାରିପଡ଼ିଲା । ଅତୁଳ ସେଠାରେ ପହଞ୍ଚି ଯାହା ଦେଖିଲା, ସେଥିରେ ତାର ଧୈର୍ଯ୍ୟଚ୍ୟୁତି ଘଟିଲା । ଦେଢ଼ବର୍ଷ ତଳେ ଯେଉଁ ତୁଳସୀ ଚଉରାମୂଳେ ଯେମିତି ମୃତ ପିତାଙ୍କର ପାଦ ଦୁଇଟି କୋଳରେ ଧରି ଜ୍ଞାନଦା ବସିଥିଲା; ଆଜି ବି ସେମିତି ତାର ସ୍ନେହମୟୀ ମାତାଙ୍କ ପାଦ ଦୁଇଟି କୋଳରେ ଧରି ବସିରହିଚି । ଜୀବନରେ ତାକୁ କେହି କେବେ ବିଚଳିତ ହେବାର ଦେଖିନାହିଁ; କିନ୍ତୁ ପିତାଙ୍କର ଶେଷ ନିଃଶ୍ୱାସ ତ୍ୟାଗ ସମୟରେ ସେ ଅତୁଳର ପାଦତଳେ ମୁଣ୍ଡ ବାଡ଼େଇ କାକୁତିମିନତି କରିଥିଲା । ଆଜି ମଧ ନୀରବରେ ବସିରହିବା ବ୍ୟତୀତ ତାର ଗତ୍ୟନ୍ତର ନାହିଁ । ତା'ପ୍ରତି କାହରି ନିଜର ନଥିଲା । ଶବ ସଂସ୍କାର ପାଇଁ ସମସ୍ତେ ବ୍ୟସ୍ତଥିଲେ । ଯଥା ସମୟରେ ଶବ ଶ୍ମଶାନକୁ ନିଆଗଲା । ସମସ୍ତଙ୍କ ପଛରେ ଜ୍ଞାନଦା ବି ଲୁହ ଢାଳି ଢାଳି ମୃତବତ୍ ଚାଲିଥାଏ । ଦୁଃଖିନୀ ବୋଲି ଗାଁର କୌଣସି ଝିଅ ତା' ସହ ଗଲେନାହିଁ ।

Digitized by srujanika@gmail.com

ଶ୍ମଶାନର ପାର୍ଶ୍ୱରେ ବର୍ଷାଜଳପୂର୍ଣ୍ଣ ପବିତ୍ର ଗଙ୍ଗା ନଦୀ ପ୍ରବାହିତ। ମା'ର ଶେଷ କାମ ଝିଅ ନୀରବରେ ଶେଷ କଲା। ଚିତାଗ୍ନି ଯେତେବେଳେ ହୁ-ହୁ ହୋଇ ଜଳିଲା, ସେତେବେଳେ ଜ୍ଞାନଦା ସେଠାରୁ ଚାଲିଯାଇ ଗଙ୍ଗାକୂଳରେ ବସି ଅଶ୍ରୁତର୍ପଣ କରିବାକୁ ଲାଗିଲା। ଗଙ୍ଗା ନଦୀଧାରକୁ ଯିବାକୁ କେହି ବାରଣ କଲେନାହିଁ। ଏହି ଗଭୀର ଦୁଃଖଦାୟକ ଘଟଣାରୁ ଦୂରେଇ ରହିବାକୁ ସେ ଗଙ୍ଗାକୂଳକୁ ଗଲାବେଳେ ସମସ୍ତେ ଆହା ବୋଲି କହୁଥାନ୍ତି। ଏହି ନିରୀହ ଶାନ୍ତ ପ୍ରକୃତିର ଝିଅ ଯେ କ'ଣ କିଛି ଅଘଟଣ କରିପାରେ, ତାହା କାହାରି କଳ୍ପନାକୁ ଆସୁନଥାଏ। ଜ୍ଞାନଦା ଖରସ୍ରୋତା ନଦୀଧାରରେ ବସିଥିବାରୁ ଅତୁଳର ମନ ମଧ୍ୟରେ ଭୟ ଜାତ ହୋଇଥିଲା। ଭାବିଲା, ଫେରିଆସିବାକୁ କହିବ। ପୁଣି ତାର ମନହେଲା ପାଖରେ ଯାଇ ଠିଆହେବ; କିନ୍ତୁ ସରମରେ ସେ ପଦେ ହେଲେ କିଛି କହିପାରିଲାନାହିଁ।

ଚିତାଗ୍ନିଠାରୁ କିଛି ଦୂରରେ ବସି ଅତୁଳ ନାନା ଭାବନାରେ ବୁଡ଼ିରହିଲା। ତା' ମନରେ ଏହି ମାୟାମୋହିତ ସଂସାର ନେଇ କେତେକ ପ୍ରଶ୍ନ ଜାଗିଉଠିଲା – କାଲି ଯିଏ ଥିଲା, ଆଜି ସେ ନାହିଁ। ତାର ନିଶ୍ୱର ଦେହ ଚିତାଗ୍ନିରେ ହୁ-ହୁ ହୋଇ ଜଳୁଛି। ବଞ୍ଚିଥିବା ପର୍ଯ୍ୟନ୍ତ ତାର କେତେ ମାୟା, କେତେ ଲୋଭ ଘରସଂସାର ଧନଜନରେ ! କିନ୍ତୁ କାହିଁ . . . ସେସବୁ ଛାଡ଼ି କୁଆଡ଼େ ସେ ଚାଲିଗଲା ?

ସହସା ତାର ବିଗତ ଜୀବନର କଥା ଆଲୋକଚିତ୍ର ପରି ଆଖିଆଗରେ ଭାସିଉଠିଲା। ତିନିବର୍ଷ ପୂର୍ବରୁ ସେ ବି ଦିନେ ଏଇ ପଥର ଯାତ୍ରୀ ହୋଇଥାନ୍ତା; କିନ୍ତୁ ଏବେ ବି ବଞ୍ଚିଚି – ତେବେ କାହାପାଇଁ ସେ ପୁନର୍ଜୀବନ ଫେରିପାଇଛି ? ଯାହାପାଇଁ ସେ ଆଜି ତିଷ୍ଠିରହିଛି, ସେ ଏହି ଜ୍ଞାନଦା – ଗଙ୍ଗାଧାରରେ ମୁକୁଳିତ କେଶବାସରେ ବସିରହିଚି। ତାର ଦୁଇ ଆଖି ଲୋତକପୂର୍ଣ୍ଣ ହୋଇଗଲା। ରୂପମାଧୁରୀର ଯଦି ଏତେ ମୂଲ୍ୟ, ତେବେ ତିନିବର୍ଷ ପୂର୍ବେ ସୌନ୍ଦର୍ଯ୍ୟର ହାଟରେ ସେ ଉପଯୁକ୍ତ ହାଟୁଆରି ହୋଇପାରିଲା ନାହିଁ କାହିଁକି ? ସେଦିନ ତାର ଆତ୍ମୀୟମାନେ ମଧ୍ୟ ଘୃଣାରେ ତାକୁ ଚାହିଁପାରୁନଥିଲେ . . .

Digitized by srujanika@gmail.com

ବହୁ ସମୟ ଅତିବାହିତ ହୋଇଗଲାଣି— ଅତୁଳର ମୋଟେ ଖିଆଲ ନଥିଲା । ଚିତାଗ୍ନି ମଉଳିଗଲାଣି— ସେ ଜାଣିପାରିନାହିଁ । ତାର ଅପଲକ ଦୃଷ୍ଟି ସେହି ନିଷ୍ପ୍ରଭ ପ୍ରତିମା ଉପରେ ନିବଦ୍ଧ ରହିଥିଲା ।

ଅନାଥ କହିଲେ, "ଆଉ ବସି ଲାଭ କ'ଣ ବାପା ? ଆସ, ଶେଷ କାମଟା ତୁମେ କରିଦେବ ।"

"ଚାଲନ୍ତୁ" —କହି ଅତୁଳ ଚିନ୍ତାରାଜ୍ୟରୁ ଫେରିଉଠିଲା ।

ସେତେବେଳେ ସୂର୍ଯ୍ୟ ପଶ୍ଚିମାକାଶରେ ନଇଁଯାଉଥିଲେ । ସେହି ଅସ୍ତୋନ୍ମୁଖ ସୂର୍ଯ୍ୟାଲୋକରେ ତାର ଦୁଇମୁଠା ଭଙ୍ଗାକାଚ ଉପରେ ଆଖିପଡ଼ିଲା । ଏହା ତାର ଉପହୃତ ଅଳଙ୍କାର । ଶତଲାଞ୍ଛନା ଓ ଅପମାନରେ ମଧ୍ୟ ଜ୍ଞାନଦା ଏହି ଉପହାର ଉପରୁ ମୋହ ତୁଟାଇ ପାରିନଥିଲା । ଭାଙ୍ଗିନଥିବା ସମୟରେ ଅତୁଳ ଯାହାକୁ ମର୍ଯ୍ୟାଦା ଦେଇନଥିଲା, ଆଜି ସେହି ଭଙ୍ଗାକାଚଗୁଡ଼ିକ ତା' ପାଖରେ ବହୁମୂଲ୍ୟ ବସ୍ତୁ ହୋଇଉଠିଲା ।

ପବିତ୍ର ଗଙ୍ଗାକୂଳ— ପଛରୁ ପାଦଶବ୍ଦ ଶୁଣି ଜ୍ଞାନଦା ଫେରିଚାହିଁଲା । ସେ ଚାହାଣି ଅତୁଳ ସହିପାରିଲାନି । ସେ ତା'ର ହାତ ଧରିବାକୁ ଆଗେଇଯାଉଥିଲା— କିନ୍ତୁ କ'ଣ ଭାବି ଆତ୍ମ-ସମ୍ବରଣ କରିନେଲା— "ଭୁଲ ସମସ୍ତଙ୍କର ହୁଏ ଜ୍ଞାନଦା ! କିନ୍ତୁ..." —ଏତକ କହି ଯେମିତି ହାତ ବଢ଼ାଇଦେଇଛି, ତାର ହାତମୁଠାରେ ଥିବା ଭଙ୍ଗାକାଚଗୁଡ଼ିକ ସୂର୍ଯ୍ୟଙ୍କର ରକ୍ତିମ ଆଭାରେ ଚିକ୍‌ଚିକ୍ କରିଉଠିଲା । ସେ ପୁଣି କହିଲା, "ତୁମେ ଆଜି ଯାହାକୁ ଭାଙ୍ଗିଦେଇ ଶ୍ମଶାନରେ ପକାଇଦେଇ ଯାଉଥିଲ, ମୁଁ ତାକୁ ପୁଣି ଶ୍ମଶାନରୁ ଗୋଟେଇଆଣିଛି ।"

କଥାର ତାତ୍ପର୍ଯ୍ୟ ଜ୍ଞାନଦା ବୁଝିପାରିଲାନାହିଁ; ତେଣୁ ସେ ନିବିଡ଼ ଶୋକାଚ୍ଛନ୍ନ ଭାବରେ ଅତୁଳକୁ ଚାହିଁ ରହି କହିଲା— "କାହିଁକି ଗୋଟେଇଆଣିଲ ?"

ଭାବାବେଗରେ ଅତୁଳର କଣ୍ଠ ରୋଧ ହୋଇ ତା'ର ଚକ୍ଷୁ ଲୋତକାପ୍ଲୁତ ହୋଇଗଲା । ସେ ତାହା ଦମନ କରି କହିଲା, "ଆଜି ମଝିଆଁ ମାଉସୀଙ୍କ ଚିତାଗ୍ନି ମଧ୍ୟରୁ ଗୋଟିଏ କଥା ସ୍ପଷ୍ଟ ଦେଖିପାରିଲି—

Digitized by srujanika@gmail.com

ଯାହାକୁ ଭାଙ୍ଗିହେବନାହିଁ, ତାକୁ ଜୋର୍‌କରି ଭଙ୍ଗାଯାଏନାହିଁ। ଭଙ୍ଗପ୍ରବଣ କାଚ୍‌କୁ ଭଙ୍ଗାଯାଇପାରେ— କିନ୍ତୁ ସମ୍ପର୍କଟା ତୁଟେଇ ହୁଏନାହିଁ। ସେମିତି ଆଜି ମଧ୍ୟ ଅତୁଟ ଅଛି ସେ ସମ୍ପର୍କଟା। ଆମେ କେହି ସହଜରେ ଭାଙ୍ଗିପାରିବୁନାହିଁ। ମୁଁ ଯାହାକୁ ଭାଙ୍ଗିବାକୁ ଅକ୍ଷମ, ତୁମେ ମଧ୍ୟ ତାହା ଭାଙ୍ଗିପାରିବନାହିଁ ବୋଲି ଭଙ୍ଗା କାଚ୍‌କୁ ମୁଁ ପୁଣି ଫେରାଇନେଉଛି।'' —ଏହା କହି ସେ ଜ୍ଞାନଦାର ଦୁଇହାତକୁ ନିଜ ହାତରେ ଚାପିଧରିଲା। କିନ୍ତୁ ଜ୍ଞାନଦା ସେମିତି ସ୍ଥାଣୁପରି ବସିରହିଥାଏ। ଅତୁଳ ଶୋକାର୍ତ୍ତ କଣ୍ଠରେ କହିଲା, ''ମୋର ସମସ୍ତ ପାପର ଗୁରୁଦଣ୍ଡ ଆଉ ତୁମେ ଦେବାକୁ ଚେଷ୍ଟା କରନା ଜ୍ଞାନଦା! ମୋର ଶତ ଅପରାଧ ଥିଲେ ମଧ୍ୟ ତୁମେ ମୋତେ ଫେରାଇନେବାକୁ ହେବ— ମୋତେ ଗ୍ରହଣ କରିବାକୁ ପଡ଼ିବ।''

ଆତ୍ମହରା ଜ୍ଞାନଦା ମୁଣ୍ଡ ଟେକି ଅତୁଳକୁ ଚାହିଁଲା। ତା'ର ଦୃଷ୍ଟିରେ ଆତ୍ମୀୟତା ଭରପୂର ଥିଲା; କିନ୍ତୁ କଥାପଦେ ସେ କହିପାରିଲାନାହିଁ। ଜ୍ଞାନଦାର ଶୀର୍ଣ୍ଣ ଦୁର୍ବଳ କରପଲ୍ଲବ ଅତୁଳର କରତଳ ମଧ୍ୟରେ କମ୍ପିଉଠିଲା। କେତେ ସମୟ ଉଭୟେ ପରସ୍ପରକୁ ଅପଲକ ନୟନରେ ଚାହିଁରହିଲେ। ଧୀରେ ଧୀରେ ଜ୍ଞାନଦାର ହାତ ଛାଡ଼ିଦେଇ ଅତୁଳ କହିଲା, ''ଜ୍ଞାନଦା, ଘରକୁ ଚାଲ— ଅନ୍ୟମାନେ ଯେ ଚାଲିଗଲେଣି!''

---

Digitized by srujanika@gmail.com